ଭୂପେନ୍ ମହାପାତ୍ର

# ମନର ମାନଚିତ୍ର



ଭୂପେନ୍ ମହାପାତ୍ର
ପ୍ରକାଶକ : ତୃପ୍ତି, ଭୁବନେଶ୍ୱର-୨
ପରିବେଷକ : ଏଥେନା ବୁକ୍ସ୍, ଭୁବନେଶ୍ୱର-୨
ଅକ୍ଷର : ରଞ୍ଜନା
ପ୍ରଚ୍ଛଦ ଚିତ୍ର : ଜ୍ୟୋତ୍ସ୍ନା
ପ୍ରଚ୍ଛଦ ସଜ୍ଜା : ତୃପ୍ତି
ମୁଦ୍ରଣ : ଏଥେନା ବୁକ୍ସ, ଭୁବନେଶ୍ୱର-୨
ପ୍ରଥମ ସଂସ୍କରଣ : ୨୦୧୦
ପୃଷ୍ଠା : ୧୧୨
ମୂଲ୍ୟ : ୮୦/-

**Manara Manachitra**

Bhupen Mahapatra
Published by : Trupti, Bhubaneswar
Distributor : Athena Books, Bhubaneswar-2
E-mail- rkdas.athena@gmail.com
Type Setting : Ranjana
Cover Art : Jyotsna
Cover Design : Trupti
Printed at : Athena Books, Bhubaneswar-2
1st Edition : 2010
Page : 112
Price : 80/-

ISBN 13 978-81-908854-5-4

# ଖୋଲା କଥା

'ମନର ମାନଚିତ୍ର'ରେ ଅଛି କେତୋଟି ଭିନ୍ନ ସ୍ୱାଦର ଗଳ୍ପ । ମୋର ଆଗରୁ ପ୍ରକାଶିତ ଗଳ୍ପଗୁଡ଼ିକ ଠାରୁ ଭିନ୍ନ । ଏହି ଗଳ୍ପଗୁଡ଼ିକ ଭିତରୁ ଅଧିକାଂଶ ବେଶ ପୁରୁଣା । ଆବଶ୍ୟକ ହେବାରୁ ସବୁକୁ ଏକାଠି କରିବାକୁ ପଡ଼ିଲା । ଆବଶ୍ୟକତାର ମଧ କାରଣ ଅଛି । ପ୍ରେମର ମାନସିକତାରେ ଆର୍ଦ୍ର ଥିବା ଗଳ୍ପଗୁଡ଼ିକୁ ମୁଁ ମୋର ଅନ୍ୟାନ୍ୟ ଗଳ୍ପ ସହିତ ମିଶେଇ ନଥିଲି । କିନ୍ତୁ 'ମୁଁ ସେପରି ଗଳ୍ପ ଲେଖିପାରେଁ ନାହିଁ' ବୋଲି ଯେତେବେଳେ ଗୋଟାଏ ସଭାରେ କୁହାଗଲା, ସେତେବେଳେ 'ମନର ମାନ୍‌ଚିତ୍ର' ଆଙ୍କିବାର ଆବଶ୍ୟକତା ପଡ଼ିଲା । ତେଣୁ ଏ ଗଳ୍ପଗୁଡ଼ିକୁ ପ୍ରେମ ଗଳ୍ପ ବୋଲି କୁହାଯାଇପାରେ ।

ସାହିତ୍ୟରେ ପ୍ରେମ ଥିଲା, ଅଛି ଓ ରହିବ ମଧ । ଆମ ପୁରାଣରେ ପ୍ରେମୋପାଖ୍ୟାନର ଅଭାବ ନାହିଁ । ସେ ସବୁର ଉତ୍ତରଣ ଏବେ ଆମ ସାହିତ୍ୟରେ ସିଧା ବା ବକ୍ର ଭାବରେ ହେଉଚି । 'ଶ୍ରୀ ରାଧା' ଓ 'ଯାଜ୍ଞସେନୀ'କୁ ଉଦାହରଣ ଭାବେ ନିଆ ଯାଇପାରେ । 'ଅମୃତଫଳ' ମଧ ବ୍ୟତିକ୍ରମ ନୁହେଁ । ଆମ ସାହିତ୍ୟରେ ଖାଲି କହିଲେ ହେବ ନାହିଁ, ଭାରତୀୟ ସାହିତ୍ୟରେ, ଏପରିକି ଭାରତ ବାହାରେ ମଧ ଏ ଗଳ୍ପଗୁଡ଼ିକ ଯୁଗେ ଯୁଗେ ଅମର ହେଇ ରହିବ ଯେମିତି ଅଛନ୍ତି ଆମ ପୁରାଣରେ ।

ପ୍ରଗତିବାଦୀ ସାହିତ୍ୟ ପ୍ରେମକୁ ଗ୍ରହଣ କରେ ନାହିଁ ବୋଲି କେହି କେହି କହନ୍ତି । ଏ ଯୁକ୍ତି ବି ଗ୍ରହଣୀୟ ନୁହେଁ । ବିଂଶ ଶତାବ୍ଦୀର ବହୁ

ନାମୀ ଦାମୀ ପ୍ରଗତିବାଦୀ ଲେଖକଙ୍କ ଲେଖାରେ ପ୍ରେମର ବର୍ତ୍ତମାନକୁ ଦେଖିଲେ ସେ କଥା ବୁଝି ହେଇଯାଏ । କ୍ରିଶନ ଚନ୍ଦର, ପ୍ରେମଚାନ୍ଦଙ୍କ ଗଳ୍ପୋପନ୍ୟାସରେ ପ୍ରେମକୁ ଅତି ମର୍ଯ୍ୟାଦାବନ୍ତ ସ୍ଥାନ ଦିଆଯାଇଛ । ଅମୃତା ପ୍ରୀତମଙ୍କ ବହୁ ଉପନ୍ୟାସରେ ସାମ୍ପ୍ରଦାୟିକତାର ଜ୍ୱାଳା ଓ ଯନ୍ତ୍ରଣା ଭିତରେ ମଧ ପ୍ରେମକୁ ପ୍ରାଧାନ୍ୟ ଦିଆଯାଇଛି । ପ୍ରେମ ପାଖରେ ଜାତି, ଧର୍ମ, ଭୌଗୋଳିକ ସୀମାରେଖା ନତ ସ୍ୱୀକାର କରିଛନ୍ତି । ଓଡ଼ିଆ ସାହିତ୍ୟରେ ସଚ୍ଚି ରାଉତରାୟ, ଅନନ୍ତ ପଟ୍ଟନାୟକ, ପ୍ରସନ୍ନ ପାଟଶାଣୀ ଏବଂ ଏପରିକି ବିପ୍ଳବୀ କବି ରବି ସିଂଙ୍କ କବିତାରେ ପ୍ରେମ ଅତି ସ୍ପଷ୍ଟ ଭାବେ ରହିଛି । ପ୍ରକୃତ କଥା ହେଲା ପ୍ରେମ ଏକ ସୂକ୍ଷ୍ମ ମାନସିକତା । ଏବଂ ଏହି ମାନସିକତା ଯେତେଦିନ ଯାଏ ମଣିଷ ମନରେ ସିଂହାସନ ମାଡ଼ି ବସିଥିବ ବୋଲି ବିଜ୍ଞାନ ସ୍ୱୀକାର କରୁଥିବ ସେତେ ଦିନ ଯାଏ ସାହିତ୍ୟରେ ତାର ବିମୋହନ ବିକାଶକୁ ଆଡ଼େଇ ଦେଇ ହେବ ନାହିଁ ।

ଏବେ ଓଡ଼ିଆ ସାହିତ୍ୟରେ ପ୍ରେମ ମରି ମରି ଆସୁଛି ବୋଲି ସ୍ୱର ଉଠୁଛି । ଏହା ଠିକ ବୋଲି ମନେ ହେଉନାହିଁ । ବିଂଶ ଶତାବ୍ଦୀର ଶେଷ ବେଳକୁ ମଣିଷ ମନରେ ପ୍ରେମ ଯୋଉ ଭିନ୍ନ ରୂପ ପରିଗ୍ରହ ଗ୍ରହଣ କରିଛି ତାହା ଆମ ସାହିତ୍ୟରେ ପ୍ରତିଫଳିତ ହେଉଛି । ମାନସିକତାର ପରିବର୍ତ୍ତନ, ଭୋଗବାଦୀ ସଂସ୍କୃତିରେ ଅବଶ୍ୟମ୍ଭାବୀ । ବିଶ୍ୱୀକରଣ ଓ ବଜାରୀ କରଣରେ ସେ ରୂପ ବଦଳିଯାଏ କିନ୍ତୁ ତାର ମୌଳିକ ଚିନ୍ତନ ସେଥିରୁ ଅଲଗା ହୁଏନା । ଯାହା ହୋଇଛି ବା ଯାହା ହେଉଛି ତାକୁ ସାହିତ୍ୟ ଯୁଗେ ଯୁଗେ ଗ୍ରହଣ କରେ ।

ମୋର ଏ ଗଳ୍ପଗୁଡ଼ିକ ସେଇ ଚିରନ୍ତନୀ ସତ୍ୟ ଉପରେ ଆଧାରିତ । ଲେଖକ ବନ୍ଧୁ ରାଜକିଶୋର ଦାସ ବହିର ପ୍ରକାଶନ ଦାୟିତ୍ୱ ନେଇଥିବାରୁ ସେ ଧନ୍ୟବାଦର ପାତ୍ର । ସେମିତି ମଧ କୁଶଳୀ ଶିଳ୍ପୀ ତଥା ଲେଖିକା ଜ୍ୟୋତ୍ସ୍ନା କୁମାରୀ ନାଏକ ଶ୍ରମ ସ୍ୱୀକାର କରି ପ୍ରଚ୍ଛଦଟିଏ ଆଙ୍କି ଦେଇଥିବାରୁ ମୁଁ ତାଙ୍କ ଠାରେ କୃତଜ୍ଞ ଏବଂ ଶେଷରେ ଯୋଉ ସାହିତ୍ୟ ପତ୍ରିକାଗୁଡ଼ିକରେ ଏହି ଗଳ୍ପସବୁ ପ୍ରକାଶ ପାଇ ପାଠକୀୟ ଶ୍ରଦ୍ଧା ଲାଭ କରିପାରିଛି ମୁଁ ତାର ସମ୍ପାଦକମାନଙ୍କ ଠାରେ ମଧ କୃତଜ୍ଞ ।

# ଗଳ୍ପସୂଚୀ

# ମୋ ବହିର ପ୍ରଥମ କେତୋଟି ପୃଷ୍ଠା

ମୋର ଯେତେବେଳେ ମଉପୁର ପୋଲିସ ଷ୍ଟେସନକୁ ବଦଳି ହେଲା ମୁଁ ସେତେବେଳେ ଆଶ୍ଚର୍ଯ୍ୟ ହୋଇଗଲି । ମୋର ନୂଆ ପୋଲିସ ଚାକିରି । ପ୍ରୋବେସନ ପିରିଅଡ ଏଇ ମାତ୍ର ସରିଚି । ସେଇ ଅବସ୍ଥାରେ ମଉପୁରକୁ ଅଫିସର ଇନଚାର୍ଜ ହିସାବରେ ପଠାଯିବା ନିଶ୍ଚୟ ସ୍ୱାଭାବିକ କଥା ନୁହେଁ ବୋଲି ଭାବୁଥିଲି । ମୋର ଆଇ.ଜି. ମୋ ଭିତରେ କି ପ୍ରକାର ଦକ୍ଷତାର ସନ୍ଧାନ ପାଇଲେ ବୁଝି ପାରିଲିନି । ମୁଁ ଯେତେବେଳେ ଅର୍ଡରଟା ହାତରେ ଧରି ଗୁମ୍ ମାରି ବସି ଗଲି ମୋର ସିନିଅର ଶୁଭେନ୍ଦୁ ମୋତେ କଥାଟା ବୁଝେଇଦେଲେ । କହିଲେ ଏଥିରେ ଚିନ୍ତିତ ହେବାର କିଛି ନାହିଁ । ବର୍ତ୍ତମାନ ଯୋଉ ଅବସ୍ଥା ସେଥିରେ ତୁମେ ହୁଏତ ଥାନାକୁ ଠିକ ଭାବେ ଚଳେଇପାରିବ ବୋଲି ସେମାନେ ଭାବି ଥିବେ । କାରଣ ତମେ ଅନ୍ତତଃ ଏ ଯାଏ ଆମର ସାଧାରଣ ଭାବେ ଯାହାକୁ ଆବିଳତା ବୋଲି କୁହାଯାଏ, ତା ସହିତ ମିଶି ପାରିନ ।

ମାନେ ? ମୁଁ ଚମକି ପଡ଼ିଲି ।

ଆଃ ତୁମେ ସେ ସବୁ ବୁଝି ପାରିବନି । ପୋଲିସର ଆବିଳତା ଦୁଇ ପ୍ରକାର । ଗୋଟିଏ ହେଲା ଦୁର୍ନୀତି ଓ ଅନ୍ୟଟି ହେଲା ରାଜନୀତି । ଏମାନେ କେହି ଏଯାଏ ତୁମ ପାଖ ପଶି ପାରି ନାହାନ୍ତି । ତାର ଅନ୍ୟ ଅର୍ଥଟି ହେଲା ତୁମର ଗୋଟାଏ ଇମେଜ ଅଛି ।

କିନ୍ତୁ ସମସ୍ତେ କହୁଚନ୍ତି ଏ ଦୁଇଟାର ଦକ୍ଷତା ନଥିଲେ ପୋଲିସ ନିଜେ ଗୋଟାଏ ଶୂନ୍‌ରେ ପରିଣତ ହୋଇଯାଏ । ମୁଁ କହିଲି ।

କିଏ କହୁଚି ? ତୁମେ ଦେଖ ଆମ ଆଇ.ଜି. ସବୁବେଳେ ପୋଲିସର ଇମେଜ ଉପରେ ଜୋର ଦିଅନ୍ତି । ତାଙ୍କ ମତରେ ଇମେଜ୍ ଥିବା ଲୋକ ସବୁ ବର୍ଗର ଲୋକଙ୍କର ଶ୍ରଦ୍ଧା ଭାଜନ ହୋଇଥାଏ । ତା ପକ୍ଷରେ ସିଚୁଏସନ କଣ୍ଟ୍ରୋଲ କରିବାକୁ ସୁବିଧା ହୁଏ ।

"ମାନେ ଲାଠିର ଆବଶ୍ୟକତା ପଡ଼ି ନଥାଏ, ଏଇ କଥା ତ ? ଏ ଇମେଜଟା କେଉଁଠି ମିଳୁଚି ଆଜ୍ଞା ?" ଅଳ୍ପ ଦୂରରେ ବସି କାମ କରୁଥିବା ପୁରୁଣା ଏ.ଏସ.ଆଇ. କେଶବ ମଲ୍ଲିକ ଉଠି ଆସିଲେ ଆମ ପଖକୁ ।

କେଶବ ବାବୁଙ୍କ ବୟସ ଏବେ ପଞ୍ଚାବନ ପାରି ହେଇ ସାରିଲାଣି । ବହୁ ବଡ଼ ବଡ଼ ଅଫିସରଠାରେ ଏବଂ ପୋଲିସର ପ୍ରାୟ ସବୁ ବିଭାଗରେ ସେ କାମ କରିଚନ୍ତି । ତାଙ୍କ ଅଭିଜ୍ଞତା ଅସୀମ । ତାଙ୍କ ବ୍ୟବହାର ମଧ ଖୁବ ଭଲ । ସମସ୍ତେ ତାଙ୍କୁ ଭଲ ପାଆନ୍ତି ।

ମୁଁ ତାଙ୍କୁ ପଚାରିଲି ଆପଣ ମୋର ଏ ଟ୍ରାନ୍ସଫରଟାକୁ କେମିତି ଦେଖୁଚନ୍ତି ?

ଆରେ ଟ୍ରାନ୍ସଫରଟା ତ ଟ୍ରାନ୍ସଫର । କେମିତି ଦେଖୁଚନ୍ତି ମାନେ ? ମଉପୁର ନିପଟ ଗାଁଟାଏ । କିନ୍ତୁ ସହର ଅପେକ୍ଷା ବେଶୀ ସେନ୍‌ସିଟିଭ । ବହୁ ବଡ଼ ବଡ଼ ନେତାଙ୍କ ଘର ସେଠି । ମଉପୁର ଥାନାର ବିଶେଷତ୍ୱ ହେଲା, ସେଠି କ୍ରାଇମ ହୁଏ କିନ୍ତୁ ପୋଲିସ ସେଠି କଅଣ କରିବ ସେ କଥା ସହଜରେ ସ୍ଥିର ହେଇପାରେନା । ସେ ଟିକିଏ ରହିଗଲେ, ତା ପରେ କହିଲେ ତେବେ ଆପଣଙ୍କ ପାଇଁ ଅସୁବିଧା ନାହିଁ । ଆପଣ ନା ନେତାଙ୍କୁ ଚିହ୍ନନ୍ତି ନା ଅସାଧୁତା ପ୍ରତି ଆଗ୍ରହ ଅଛି । ସଂପୂର୍ଣ୍ଣ ନିରପେକ୍ଷ ଭାବରେ କାମ କରିପାରିବେ ।

ମୋ ଭିତରେ ସେତେବେଳେ ଭୟ ସୃଷ୍ଟି ହେଲା । ଆମ ଗୁରୁମାନେ ସବୁବେଳେ କହନ୍ତି ପୋଲିସ ଓ ନିରପେକ୍ଷତା ଦୁଇଟା ଅଲଗା ଅଲଗା କଥା ।

ପରଦିନ ଡି.ଆଇ.ଜି. ମୋତେ ଡକେଇଲେ । ମୁଁ ତାଙ୍କ ଅଫିସରେ ଯାଇ ଦେଖିଲି ସେଠି ଆଇ.ଜି. ମଧ ଅଛନ୍ତି । ସେମାନେ ସମସ୍ତେ ଭଲ ମୁଡ୍‌ରେ ଥିଲା ପରି ଲାଗିଲା ।

ମୁଁ ଭିତରକୁ ପଶିବା ମାତ୍ରେ ସେ ମୋତେ ପଚାରିଲେ କେବେ ନୂଆ ଜାଗାକୁ ଯାଉଚ ? ଅର୍ଡ଼ର ପାଇଥିବ ତ ?

ମୁଁ ଦୁଇ ଚାରି ସପ୍ତାହ ଭିତରେ ଯିବି ବୋଲି କହିବାରୁ ସେ କହିଲେ ନା, ଯେତେ ଶୀଘ୍ର ହୁଏ ସେତେ ଭଲ । ଆଉ ଦୁଇ ମାସ ଭିତରେ ସେଠି ପଞ୍ଚାୟତ ନିର୍ବାଚନ ହେବ । ତମେ ଆଗରୁ ଯାଇ ସେଠାକାର ସିଚୁଏସନ ଟିକେ ଷ୍ଟଡି କରିନିଅ । ଆମ ପାଇଁ ନିର୍ବାଚନଟା ପରୀକ୍ଷାର ସମୟ । ସେ ସମୟଟା ଉତୁରି ଗଲେ ଗଲା । ତମେ ନୂଆ ବୋଲି ନିଜକୁ ଭାବ ନାହିଁ । ଅଭିଜ୍ଞତା ହିଁ ମଣିଷକୁ ଶିକ୍ଷା ଦିଏ ।

ମୁଁ ଖୁସି ହେଇଗଲି । ମୁଁ ଯେତେବେଳେ ଟ୍ରେନିଂ କଲେଜରେ ଥିଲି ସେତେବେଳେ ଆଇ.ଜି.ସାହେବ ଥିଲେ ପ୍ରିନ୍ସିପାଲ । ବେଷ୍ଟ କେଡେଟ୍ ହିସାବରେ ସେ ମୋତେ ସିଲ୍ଡ ପ୍ରଦାନ କରିଥିଲେ । ସେଇ ହିସାବରେ ମୁଁ ତାଙ୍କର ଶ୍ରଦ୍ଧାର ପାତ୍ର ହେଇଥିଲି ।

ତାଙ୍କଠାରୁ ବିଦାୟ ନେଇ ଆସିଲା ପରେ ମୁଁ ଠିକ କଲି ଗୋପୀନାଥପୁର ଥାନାରୁ ସେଇଦିନହିଁ ବିଦାୟ ନେବି । କିନ୍ତୁ ମଉପୁରରେ ପଞ୍ଚାୟତ ନିର୍ବାଚନ ହେବ ଏ କଥାଟା ଶୁଣିଲା ପରେ ମନଟା ଫିକା ପଡ଼ିଯାଇଥିଲା । ଘରେ ପଶୁ ପଶୁ ମୁଣ୍ଡରେ ଚାଳ ବାଜିବ କି ?

ସେ ଦିନ ସଂଧାରେ ନିଜ ରୁମରେ ଜିନିଷ ପତ୍ର ସଜାଡୁ ଥିବାବେଳେ ଭିତରକୁ ପଶି ଆସିଲା ଶୁଭ୍ରା ସେନାପତି । ଥାନାର ଏକମାତ୍ର ମହିଳା ସବ୍ ଇନସ୍‌ପେକ୍ଟର । ଖୁବ୍ ସ୍ମାର୍ଟ, ଖୁବ

ସୁନ୍ଦର ଦେଖିବାକୁ ଲମ୍ବା, ଗୋରା । ଭଲ ହାଉସ ଓ୍ୱାଇଫଟିଏ ହେଇପାରନ୍ତା । କିନ୍ତୁ ପୋଲିସରେ ଚାକିରି କରୁଚି ବୋଲି ସେ ବାହା ହେଇ ପାରୁନି । ଯିବା ପ୍ରସ୍ତାବ ଫେରୁନି । ଶୁଭ୍ରା ମୋ'ଠୁ ବର୍ଷେ ଜୁନିଅର ।

ଗୁଡ୍ ଇଭିନିଂ ସାର୍ । କଅଣ ଜିନିଷପତ୍ର ବାନ୍ଧା ଆରମ୍ଭ ହେଇ ଗଲାଣି ?

ତମେ ଏ ବିଶେଷ ସମ୍ବୋଧନ କେବେଠୁ ଆରମ୍ଭ କଲଣି ଶୁଭ୍ରା ? ମୁଁ ପଚାରିଲି ।

ବାବା, ଆଇ.ଜି.ଙ୍କ ପ୍ରଥମ ପସନ୍ଦ୍ । ଏବେ ଅଫିସର ଇନ ଚାର୍ଜ । କିଏ କହିବ ମୋର ସେ ଥାନାରେ ସେକେଣ୍ଡ ଅଫିସର ଭାବରେ ପୋଷ୍ଟିଂ ନହେବ । ସାର କହିବା ଅଭ୍ୟାସଟା ଏବେଠୁଁ ଆରମ୍ଭ ନ କଲେ ପରେ ଅସୁବିଧାରେ ପଡ଼ିବିନି ? ସେ ହସିଲା ।

ଶୁଭ୍ରା ରୁମକୁ ପଶିଲା ମାତ୍ରେ ମୋତେ ଲାଗିଲା ରୁମ ଭିତରକୁ ଗୋଟେ ସଜ ଫୁଲର ମହକ ପଶି ଆସିଲା । ମୁଁ ଆଶ୍ଚର୍ଯ୍ୟ ହେଲି, ଶୁଭ୍ରାତ କେବେ ପରଫିଉମ୍ ବ୍ୟବହାର କରେନି । ତେବେ କଅଣ ଏଇଟା ? ଆଜି ଲଗେଇଚି କି ଆଉ ? କିନ୍ତୁ କାହିଁକି ? ଭୁରୁଭୁରୁ ଗନ୍ଧଟା ଦେହରୁ ବାହାରୁଚି କି ନା ଜାଣିବା ପାଇଁ ମୁଁ ତା ପାଖକୁ ଲାଗି ଠିଆହେଇପଡ଼ିଲି ଏବଂ ହାତ ଦେଖାଇ କହିଲି ମେଡମ ବସିବା ହେଉ ।

ସେ ଗୋଟିଏ ପାହୁଣ୍ଡ ଘୁଞ୍ଚିଗଲା ଏବଂ ବସିପଡ଼ିଲା ପାଖ ସୋଫା ଉପରେ । ତାପରେ କହିଲା ଏବେତ ଅଫିସରିଆ ଢଙ୍ଗ ଶିଖି ଗଲେଣି ବୋଧେ ?

ତାର ଅଭିମାନର କାରଣ ବୁଝି ଗଲି । ବରାବର ଶୁଭ୍ରା ସମ୍ବୋଧନରୁ ମେଡମକୁ ଉଠି ଯିବା ତାକୁ ଆଘାତ ଦେଲା ନା ଏଇଟା ତାର ସ୍ୱାଭାବିକ ଚରିତ୍ରର ଲକ୍ଷଣ ବୁଝି ହେଲାନି । ମୁଁ ବିବାହ କରିନାହିଁ ଜାଣି ମଧ ଶୁଭ୍ରା ମୋ ପ୍ରତି କେବେ ଅନାବଶ୍ୟକ ଆନ୍ତରିକତା ଦେଖାଇ ନାହିଁ । ରାତି ହେଉ ବା ଦିନ ହେଉ ଆମେ ମଟର ସାଇକେଲରେ ବସି ଯାଇଚୁଁ, ସାରା ରାତି ଗୋଟିଏ ଜିପ୍‌ରେ ବସି ପେଟ୍ରୋଲିଂ କରିଚୁଁ, ବହୁ ବାର ଦେହକୁ ଦେହ ଘସି ହେଇଚି, କିନ୍ତୁ କୋଉଠି କେବେ ସାମାନ୍ୟ ଦୁର୍ବଳତା ମଧ ଆମ ଭିତରେ ଉଙ୍କି ମାରିନି । ବନ୍ଧୁତା ଗୋଟାଏ ନିରୋଳ ବନ୍ଧୁତାର ଫୁଲବେଦୀ ଉପରେ ସିଂହାସନ ମାଡ଼ି ବସିଚି । କିନ୍ତୁ ସେ ଦିନ ସେ ଯାହା କହିଲା ସେଥିରେ ମୋ ମନରେ ଭିନ୍ନ ଭାବନାଟିଏ ଉଙ୍କି ମାରିଲା । ତାକୁ ଦୁର୍ବଳତା କହି ହେବ କିନା ଜାଣେନା ।

ଶୁଭ୍ରା ଏପରି ଏକ ଝିଅ ଯାହାକୁ ଦେଖିଲେ ସନ୍ନ୍ୟାସୀଟିଏ ମଧ ମନ୍ତ୍ର ଉଚ୍ଚାରଣ ଭୁଲି ଯାଉଥିବ । ବିଶ୍ୱାମିତ୍ରଙ୍କ ଘଟଣାରେ ମେନକାଙ୍କୁ ଅନେକ ପରିଶ୍ରମ କରିବାକୁ ପଡ଼ିଥିଲା । କିନ୍ତୁ ଶୁଭ୍ରା କ୍ଷେତ୍ରରେ ସେ ସବୁର ଆବଶ୍ୟକତା ନାହିଁ । ତପସ୍ୟା ମନକୁ ମନ ଭାଙ୍ଗି ଯାଉଥିବ । ତା ସତ୍ତ୍ୱେ ତାର ବିବାହ ପ୍ରସ୍ତାବ ସବୁ ଅକାଳ ମୃତ୍ୟୁବରଣ କରେ ।

ନାରୀମାନଙ୍କୁ ଆମେ ପୁରୁଷମାନେ ଗୋଟାଏ ପ୍ରେମର ଅବତାର ବୋଲି ବୁଝୁଁ । ସେ ନାରୀ ସୁନ୍ଦରୀ ହେଇଥିଲେ କଥା ନାହିଁ । କିନ୍ତୁ ଶୁଭ୍ରା ସେ ସବୁର ବ୍ୟତିକ୍ରମ । ପ୍ରେମ କିମ୍ବା

ସାଧାରଣଭାବେ ଆମେ ଯାହାକୁ ଭଲ ପାଇବା କହୁଁ ସେ ସବୁ ତା ଭିତରେ କେବେ ବି ଗଜା ମାରିଥିବ ବୋଲି ମୋର ମୋଟେ ବିଶ୍ୱାସ ହୁଏନା । ମୁଁ ବେଳେବେଳେ ଭାବେଁ ଈଶ୍ୱର ତାକୁ ଗଢ଼ିଲାବେଳେ ଉପାଦାନର କିଛି ଭାଗ ମାପର ଭୁଲ କରିଦେଲେ କି ଆଉ ?

ଯୋଉଦିନ ସ୍ଥାନୀୟ କେଦାରଗୌରୀ ପାର୍କରେ 'ଭାଲେଣ୍ଟାଇନ ଡେ' ପାଳନ କରୁଥିବା ପ୍ରେମୀ ଯୁଗଳଙ୍କ ଉପରେ ମହିଳା କମିଶନଙ୍କ ନିର୍ଦ୍ଦେଶରେ ପୋଲିସ ଫୋର୍ସ ଯାଇ ଅତର୍କିତ ଆକ୍ରମଣ କରିଥିଲା ସେ ଦିନ ଆକ୍ରମଣର ନେତୃତ୍ୱ ନେଇଥିଲେ ଶୁଭ୍ରା ସେନାପତି । ପୋଲିସ ତାକୁ 'ଅପରେସନ ଯୁଗଳ' ବୋଲି କହିଥିଲା । ତାହା ସଂପୂର୍ଣ୍ଣ ସଫଳ ଥିଲା ବୋଲି ଟିଭି ତାର ପ୍ରସାରଣ ପ୍ରାୟ ସାତ ଦିନ ଯାଏ ଚଳେଇ ରଖିଥିଲା । ସେ ଦୃଶ୍ୟ ଯେଉଁମାନେ ଦେଖିଚନ୍ତି ସେମାନେ ନିଶ୍ଚୟ ଶୁଭ୍ରାଙ୍କ ହସ ହସ ମୁହଁର ମହିଷାସୁର ମର୍ଦ୍ଦିନୀ ବେଶ ଦେଖିଥିବେ । ଶୁଭ୍ରାଙ୍କ ହସ ଗୋଟାଏ 'ଜବ୍ ସାଟିସ୍‌ଫେକସନ୍'ର ହସ ହେଇଥିବ ।

କିନ୍ତୁ ସେ ଦିନ ଶୁଭ୍ରାର କଥାଟା ଆକ୍ଷେପ କି ଆକଟିବା ପଣ ବୁଝିହେଲାନି । କି ଗୋଟାଏ ମିଶାମିଶି ଭାବ ହେଇଥିବ । ନାରୀମାନେ ତ ସବୁବେଳେ ମୋ ପାଖରେ ଅବୁଝା । ବୁଝି ନ ପାରିଲେ ଜଣେ ମୂର୍ଖଙ୍କ ଭଳିଆ ବ୍ୟବହାର କରେ । ମୁଁ କହିଲି, ହଉ ସରି, ଏବେ କୁହ । ତମେ ଏ ସଂଧ୍ୟା ସମୟରେ ଥାନା ଛାଡ଼ି କେମିତି ଚାଲିଆସିଲ ?

କାଲି ଯାଉଚନ୍ତି ଶୁଣି । ସତରେ ଯାଉଛନ୍ତି ? ଏତେ ଶୀଘ୍ର କାହିଁକି ? ଅନ୍ତତଃ ଟ୍ରାନଜିଟ୍ ପିରିଅଡ଼ତ ଏଠି ରହିଥାଆନ୍ତେ । ବିଦାୟକାଳୀନ ସଂବର୍ଦ୍ଧନାତ ଦିଆଯିବ ।

ମୋର ଫେଆରୱେଲ ? ଖାଲି ତୁମେ ଦେଇ ଦେଲେ ଚଳିବ । ମୁଁ ହସିଲି ।

ମୁଁ ଦେଖିଲି ତା ମୁହଁଟା ହଠାତ କେମିତି ଲାଲ ପଡ଼ିଗଲା । ଏମିତି କହିବା ବୋଧେ ମୋ ପକ୍ଷେ ଠିକ ହେଲା ନାହିଁ ।

ସେ ଗମ୍ଭୀର ହେଇଗଲା । କେମିତି ଗୋଟାଏ ଭିନ୍ନ ସ୍ୱରରେ କହିଲା, ଆଉ ମୁଁ ଯଦି ଆପଣଙ୍କୁ ଫେଆରୱେଲ ଦେବାକୁ ଚାହୁଁ ନଥାଏ ?

ସିପାହିଟିଏ ଆସି ଦୁଆର ମୁହଁରେ ଠିଆ ହେଲା । ସେଲ୍ୟୁଟମାରି କହିଲା ମେଡମ, ଆପଣଙ୍କୁ ସାର୍ ଡାକୁଚନ୍ତି । ସିପାହି ଚାଲିଗଲା

ଶୁଭ୍ରା ତା ହେଣ୍ଡ ବେଗ୍‌ରୁ ଗୋଲାପ ଓ ରଜନୀଗନ୍ଧାର ବୋକେଟିଏ ବାହାରକଲା ଓ ମୋ ଆଡ଼କୁ ବଢ଼ାଇ ଦେଇ କହିଲା, ତଥାପି ଏଇଟା ମୋ ତରଫରୁ... ସେ ଚାଲିଗଲା ।

ମୁଁ ବିସ୍ମିତ ହେଲି । ମୋ ପାଇଁ ଶୁଭ୍ରା ଭିତରେ ଯେ ଟିକିଏ ଦରଦ ଅଛି ସେ କଥା ସେଇଦିନହିଁ ଜାଣିଲି । କିନ୍ତୁ ଏଇ କଥାଟା ଉପରେ କେତେ ଗୁରୁତ୍ୱ ଦେଇ ହେବ ସେ ବିଷୟରେ ମୋର ସନ୍ଦେହ ଥିଲା । ଯିଏ ଶୁଭ୍ରାକୁ ପାଖରୁ ଦେଖିଚି, ଜାଣିଚି ତାର ଆଚାର ବ୍ୟବହାର, ସେ ଯେ ଗୋଲାପର ଗୁଚ୍ଛ କାହାକୁ ଦେଇପାରେ ଏ କଥା କେମିତି ବିଶ୍ୱାସ କରିବ ?

ମୁଁ ମୋ କାମରେ ମନ ଦେଲି । ରାତିରେ ଥାନାକୁ ଯାଇ ସାମାନ୍ୟ କିଛି କାମ ବାକି ଥିଲା- ସାରିଦେଲି । ଆଇ.ଆଇ.ସି. ଓ ଅନ୍ୟମାନଙ୍କୁ ଭେଟି ବିଦାୟ ନେଇ ଆସିଲି । ଶୁଭାକୁ ସେତେବେଳେ ମନେମନେ ଖୋଜିଥିଲେ ମଧ ପାଇ ନଥିଲି ।

ସେଦିନ ମତପୁରରେ ପହଞ୍ଚିଲା ବେଳକୁ ଦିନ ଏଗାର । ଭୋର ସକାଳୁ ବାହାରିଥିଲି । ଦୀର୍ଘ ଦୁଇ ଶହ କିଲୋମିଟର, ମୋଟେ ବେଶୀ ନୁହେଁ । କିନ୍ତୁ ରାସ୍ତା ଏତେ ଖରାପ ଯେ କାରଟି ୨୦/୩୦ କିଲୋମିଟରରୁ ବେଶୀ ବେଗରେ ଆଗେଇ ପାରୁନଥାଏ । ଥାନାରେ ପହଞ୍ଚ ଗାଡ଼ିର ଭଡା ଦେଇ ମୁଁ କନଷ୍ଟେବଲଟିକୁ କହିଲି ଜିନିଷପତ୍ର ଉହ୍ଲେଇବାକୁ । କେତେବା ଜିନିଷ ପତ୍ର । ଦୁଇ ଚାରିଟା ସୁଟକେଶ ମାତ୍ର ।

ମତପୁରକୁ ସହର କୁହାଯିବ ନା ମଫସଲ ? ବ୍ଲକ ଅଫିସ ଅଛି, ପଞ୍ଚାୟତ ଚେଆରମେନ ଅଫିସ ଅଛି । ତହସିଲଦାର, ହସପିଟାଲ, ଗୋଟିଏ ଛୋଟ କୋର୍ଟ ମଧ ଅଛି । ସବୁଠାରୁ ବଡ଼ କଥା ଗୋଟିଏ ରେଳ ଷ୍ଟେସନ ମଧ ଅଛି । ପାଞ୍ଚ ସାତଟା ପାସେଞ୍ଜର ଟ୍ରେନ ସେଠି ଦିନ ଭିତରେ ଅଟକୁ ଥିବ କି କଅଣ । ଏବଂ ସେଇ ଘନ ଜନବସତି ଭିତରେ ଗୋଟାଏ କଲେଜ ଓ ଦୁଇଟା ହାଇସ୍କୁଲ । ମନେମନେ ଭାବିଲି, ଆଉ କଅଣ ରହିଗଲା ? ଗୋଟାଏ ସ୍ୱୟଂ ସଂପୂର୍ଣ୍ଣ ସହର । ଆଉ ଥାନାବିତ ମନ୍ଦ ନୁହେଁ । ଭଲ ବିଲଡିଂ । ଲାଇଟ୍ ଫୋନ୍ ସବୁ ଅଛି । ଫୋନ ଅଛି କିନ୍ତୁ ଲାଇନ କଟା ହେଲ୍ଣି ଛଅମାସ ହେଲା ।

ମୁଁ ତା ପାଇଁ ଚିନ୍ତିତ ନଥିଲି । କାରଣ ଏସବୁ ଆଜିକାଲି ସାଧାରଣ କଥା । ପାଇପ ଥିଲେ ପାଣି ନଥାଏ କି ଘର ଥିଲେ ଛପର ନଥାଏ ।

ଥାନାର ଷ୍ଟାଫ୍ ସଂଖ୍ୟାବି ମନ୍ଦ ନୁହେଁ । ଦୁଇ ଜଣ ସବ୍ ଇନସପେକ୍ଟର, ଚାରିଜଣ ଏ.ଏସ.ଆଇ ଏବଂ ୧୨ଜଣ କନଷ୍ଟେବଳ । କିନ୍ତୁ କାହାନ୍ତି ସେମାନେ ? ଅଧାବି ନାହାନ୍ତି । ଲେଡି ହେଡ୍ କନଷ୍ଟେବଳଟିଏ ଆସି ସେଲ୍ୟୁଟ ମାରିଲା । ବୟସ କେତେ ହେଇଥିବ କେଜାଣି । ତା ମୁଣ୍ଡକୁ ଦେଖିଲି ସିନ୍ଦୁର ଟୋପା ନାହିଁ । ସେଥିରୁ ବାହା ହେଇନାହିଁ ବୋଲି ଉପସଂହାରରେ ପହଞ୍ଚ ହେବନାହିଁ । ପୋଲିସ ଚାକିରିରେ ତାର ବାଧବାଧକତା ନଥାଏ । ଯୋଉମାନେ ହିନ୍ଦୁତ୍ୱ ଉପରେ ଜୋର ଦିଅନ୍ତି ସେମାନେ ଏଠିକୁ ଆସିଲେ ମୁଣ୍ଡ ତଳକୁ କରୁଥିବେ ।

ତା ନାଁ ସବିତା ମହାନ୍ତି । ବେଶ ଭଲ ସ୍ୱାସ୍ଥ୍ୟ । ଖୁବ ଖେଳାଖେଳି କରୁଥିଲା ବୋଧେ । ମୋତେ କହିଲା । ସମସ୍ତେ ଠିଆ ହେଇଚନ୍ତି । ଆପଣ ଟିକିଏ ଆସନ୍ତୁ ।

ଏସବୁ ଆମ ପୋଲିସ ପରମ୍ପରା । ମୁଁ ସେ ସବୁ ସାରି ବସାକୁ ଗଲି ।

ପରଦିନ ମୁଁ ଯେତେବେଳେ ଥାନାକୁ ଆସିଲି, ଦେଖିଲି ମୋ ଟେବୁଲ ଉପରେ ଥୁଆ ହେଇଚି ଦୁଇଟା ଖବରକାଗଜ । ଏ.ଏସ୍.ଆଇ ରଘୁନାଥ ଆସି କହିଲେ ଦେଖନ୍ତୁ ଆପଣଙ୍କ

କଥା ବାହାରିଛି ଖବରକାଗଜରେ । ଖୋଲି ଦେଖିଲି, ଅଳ୍ପ ବହୁତ ପ୍ରଶଂସି ସହିତ ମୋର ଫଟୋ । ଏସବୁ ସେମାନେ କୋଉଠୁ ସଂଗ୍ରହ କଲେ କେଜାଣି ? ରଘୁବାବୁ କହିଲେ ସେମାନଙ୍କ ପାଇଁ ଏସବୁ ଖୋଜିବାକୁ ଅସୁବିଧା ହୁଏ ନାହିଁ । ରହନ୍ତୁ, ସେମାନେ ଆସିବେକି ଆପଣଙ୍କ ପାଖକୁ ?

ମୁଁ ଆଶ୍ୱସ୍ତ ହେଲି । ଭଲ କଥା ଏମାନଙ୍କୁ ଦୂରେଇ ରଖିବା ଉଚିତ ହେବନାହିଁ । ଆମ ଲୋକସଂପର୍କର ଏଇଟା ଗୋଟାଏ ବଡ଼ ଅଂଶ ।

ସେଦିନ ବି.ଡ଼ି.ଓ. ମୋତେ ଫୋନ କଲେ ? କହିଲେ ସ୍ଥାନୀୟ ଯୁବକ ସଂଘର ନେତାମାନେ ଆପଣଙ୍କ ପାଖକୁ ଯିବେ । ଆସନ୍ତା ସରସ୍ୱତୀ ପୂଜା ଦିନ ସେମାନେ ମେଲୋଡିର ବ୍ୟବସ୍ଥା କରିଛନ୍ତି । ଆପଣ ଦେଖିଥିବେ କୋର୍ଟର ମେନ ଛକ ଉପରେ ତାଙ୍କ କ୍ଲବ । ସେଇଠି ପୂଜା ପେଣ୍ଡାଲ ଓ ମେଲୋଡି ସେଇଠି ହେବ ।

ମୁଁ କହିଲି ଛକ ଉପରେ ମେଲୋଡି କଲେ ରାସ୍ତା ବନ୍ଦ ହେବ । ତା ପଛକୁ ଥିବା ପଡ଼ିଆରେ ହେଲେ ଭଲ ହୁଅନ୍ତା ।

ମୁଁ ବି ତାଙ୍କୁ ସେଇ କଥା କହୁଥିଲି । କିନ୍ତୁ ତାଙ୍କ କ୍ଲବର ମୁଖ୍ୟ ହେଉଛନ୍ତି ସ୍ଥାନୀୟ ବିଧାୟକ । ସେ ମଧ ସେଦିନ ମୁଖ୍ୟ ଅତିଥି । ସେ ଗୁଁ ଗୁଁ ହେଲେ ।

ମୋର ତାଙ୍କ ଠାରୁ ଅଧିକ କିଛି ଜାଣିବାର ଆବଶ୍ୟକତା ନଥିଲା । ସଂଗେ ସଂଗେ କହିଦେଲି, ହଉ ସେମାନେ ଆସନ୍ତୁ । କିନ୍ତୁ ସେମାନଙ୍କୁ ଟିକିଏ ବୁଝେଇ ଦିଅନ୍ତୁ, ସବୁ କାମ ଯେମିତି ଶାନ୍ତି ଶୃଙ୍ଖଳାର ସହିତ ହେଇଯାଏ ।

ମୁଁ ଧରିନେଲି ଯେ ଗୋଟାଏ ସେମି ଅର୍ବାନ୍ ଏରିଆର ଥାନାରେ ଏମିତି ହୋଇଥାଏ । ତାକୁ ସହ୍ୟ କରିବାକୁ ପଡ଼େ ।

ସେ ଦିନ ରାତିରେ ଶୁଭ୍ରାର ଫୋନ ପାଇଲି । ପ୍ରଥମେ ପଚାରିଲା ଆପଣ ଏତେ ଦିନ ହେଲା ଗଲେ ଥରେ ବୋଲିତ ଫୋନ କଲେ ନାହିଁ ।

ମୁଁ ତାର କି ଉତ୍ତର ଦେଇଥାଆନ୍ତି । ସେମିତି କିଛି ଆବଶ୍ୟକତା ନଥିଲା । କହିଲି, ନୂଆ ଜାଗାରେ ସମସ୍ୟା ସହିତ ପ୍ରଥମେ ପରିଚିତ ହୋଇ ଯାଉଥିଲି । ଏଇଟାହିଁ ଡେରିର କାରଣ । ତାର କଥାର ମୋଡ଼ ବଦଳେଇବାକୁ କହିଲି ତୁମେ ଜାଣ ଶୁଭ୍ରା ଏ ଥାନାର ବିଶେଷ କଥାଟାଏ ଦେଖିଲି ଯେ ଅଧିକାଂଶ ନେତାଙ୍କ ଫଟୋ ଓ ଜୀବନୀ ଆମ ଥାନାର ରେକର୍ଡରେ ଅଛି । ବଡ଼ ମଜା ଲାଗେ ଏ ସବୁ ଦେଖିଲେ ।

ଗୋଟାଏ ନୂଆ ଅଭିଜ୍ଞତା ନା ? ଶୁଭ୍ରା ପଚାରିଲା ।

ନୂଆ ନୁହେଁ ଆଉ କଅଣ ? ମୁଁ ଯେତେବେଳେ ଦିଲ୍ଲୀ କ୍ରାଇମ ବ୍ୟୁରୋକୁ ଟ୍ରେନିଂରେ ଯାଇଥିଲି ସେତେବେଳେ କେତେକ ସ୍ୱାଧୀନତା ସଂଗ୍ରାମୀଙ୍କୁ ଆତଙ୍କବାଦୀ ବୋଲି ଦର୍ଶା

ଯାଉଥିଲା । ସ୍ୱାଧୀନତା ପୂର୍ବରୁ ପୋଲିସ ଅବଶ୍ୟ ଏମିତି କରୁଥିଲା । କିନ୍ତୁ ଏବେ ଯୋଉମାନଙ୍କୁ ଆମେ ସଭା ସମିତିରେ ଫୁଲମାଳ ପିନ୍ଧାଉଚୁ ସେମାନେ ବି ଆମ ରେକର୍ଡରେ ।

ହଉ ମୋତେ ସେଥିରୁ କଅଣ ମିଳିବ କହିଲେ ? ଶୁଭ୍ରା କହିଲା ।

ହଉ ତୁମେ କଅଣ ଜାଣିବାକୁ ଚାହୁଁଚ କହିଲ ? ମୁଁ କେମିତି ଖାଉଚି, କେମିତି ପିଉଚି-ଏଇ ସବୁ କଥା ? ତାର କିଛି ପରିବର୍ତ୍ତନ ନାହିଁ ।

ନିକଟରେ କିଛି ପରିବର୍ତ୍ତନ ହେବାର ଆଶା ନାହିଁ ?

ମୁଁ ଦେଖିଲି ବି.ଡ଼ି.ଓ ଓ ତହସିଲଦାର ଗେଟ ପାଖରେ ଥାନା ଆଡ଼କୁ ଆସୁଚନ୍ତି । କହିଲି, ଶୁଭ୍ରା ମୁଁ ପରେ ଫୋନ କରିବି । ଏଠିତ ଏମିତି ମୋବାଇଲ ଟାୱାର ସହଜରେ ଧରେ ନାହିଁ । ଏବେ ଦୁଇ ଜଣ ଭଦ୍ରଲୋକ ଆସୁଚନ୍ତି । ଟିକିଏ ଛାଡ଼ିଦିଅ ।

ବିଡ଼ିଓ ଓ ତହସିଲଦାରଙ୍କୁ ଅଳ୍ପ ସମୟ ଭିତରେ ବିଦାୟ ଦେଇ ମୁଁ ବସାକୁ ଫେରିଲି । ଟାୱାର ପ୍ରୋବଲେମ ଅବଶ୍ୟ ଅଛି । କିନ୍ତୁ ଶୁଭ୍ରାକୁ ଟେଲିଫୋନ କରିବି କି ? କଅଣ କହିବି ତାକୁ ? ସେ କଅଣ ଚାହେଁ ? କୋଉ କଥାର ପରିବର୍ତ୍ତନ ସେ ଆଶା କରୁଚି ?

ମୁଁ ମୋବାଇଲକୁ ହାତରେ ଧରିଲି । ଘରେ ରୋଷେଇ କରୁଥିବା ସୁରେନକୁ କହିଲି ବଜାରରୁ ଗୋଟେ କୋଲ୍ଡ ଡ୍ରିଙ୍କ ଆଣିବାକୁ, ଥାନାରେ ଆହୁରି କିଛି କାମ ବାକି ଅଛି । ରାତି ୧୨ଟା ପୂର୍ବରୁ ଖାଇ ହୁଏନି । ଶୁଭ୍ରା ସହିତ ପଦେ କଥା ହେଇ ଫେରିଯିବି ଠିକ କଲି ।

କିନ୍ତୁ ତାକୁ ମୋର କଅଣ କହିବାର ଅଛି ? ମୁଁ ଟ୍ରେନିଂ କଲେଜରେ ଥିଲା ବେଳେ ଦଶ ବର୍ଷର ସବ ଇନସପେକ୍ଟର କଲ୍ୟାଣ ସିଂ, ସ୍ତ୍ରୀ ଓ ଗୋଟିଏ ପାଞ୍ଚବର୍ଷର ପୁଅକୁ ନେଇ ଟାଉନ ଥାନାରେ ଥିଲା । ତିନିବର୍ଷ ଭିତରେ ଚାରିଥର ଟ୍ରାନ୍ସଫର ହେଲା ପରେ ସେ ଟାଉନ ଥାନାକୁ ଆସିଥିଲା । ଅନ୍ତତଃ ବର୍ଷେ ଦି ବର୍ଷ ସେ ତା ସ୍ତ୍ରୀ ସହିତ ଏକାଠି ରହିବ ବୋଲି ଆଶା କରିଥିଲା । କିନ୍ତୁ ସେ କଥା ହେଲା ନାହିଁ । ଟାଉନ ଥାନାରେ ସେ ଥରେ ଥରେ ପାଞ୍ଚ ସାତ ଦିନ ଯାଏ ସେଇ ଥାନାରେ ହିଁ ଶୋଇ ପଡ଼େ । ଶେଷରେ ତା ସ୍ତ୍ରୀ ଆତ୍ମହତ୍ୟା କରିଦେଲା । ଗୋଟାଏ ବିରାଟ ସ୍ୱପ୍ନ ନେଇ ଝିଅଟି ପୋଲିସ ଅଫିସରକୁ ବିବାହ କରିଥିଲା । କଅଣ ସେ ମାଗିଥିଲା ? ଖାଲି ସୁଖ ଟିକିଏ । ଗୋଟେ ସୁଖର ପରିବାର । କୁଆଡ଼େ ଗଲା ତାର ସ୍ୱପ୍ନ ? ପୋଲିସର ତଳିଆ କର୍ମଚାରୀଙ୍କର ପରିବାର ବୋଲି କିଛି ନଥାଏ । ନାଁକୁ ମାତ୍ର ସ୍ୱାମୀ ଓ ସ୍ତ୍ରୀ ପରିବାର ଛାଡ଼ିଲେ ଦକ୍ଷତା ଦେଖେଇ ହୁଏ । ଏତେ ସବୁ କଥା ଜାଣିବା ପରେ ମଧ ଶୁଭ୍ରା ଘର କରିବାକୁ ଚାହୁଁଚି । ସମ୍ପୂର୍ଣ୍ଣ ଅନିଚ୍ଛା ସତ୍ତ୍ୱେ ମୁଁ ତାକୁ ଫୋନ ଲଗେଇଲି । ଯାହା ଦେଖିଲି ସେଥିରୁ ଜଣାଗଲା ସେ ମୋ କଲ୍‌କୁ ଅପେକ୍ଷା କରି ବସିଥିଲା ।

କଅଣ ବହୁତ ବ୍ୟସ୍ତ ଅଛନ୍ତି ନା ? ସେ ପଚାରିଲା ।

ହଁ ବ୍ୟସ୍ତ ତ ନିଶ୍ଚୟ । ତେବେ ତମ ପାଇଁ ସମୟ ଦେଇପାରିବି । ମୁଁ ଦେଖିଲି ସେ ଟିକିଏ ଉତ୍ସାହିତ ହେଇ ଉଠିଲା । କହିଲା ଅସୀମ ଦୟା ।

ମୁଁ ପଚାରିଲି ହଉ ତମର ସେ OFS ପ୍ରସ୍ତାବଟା କଅଣ ହେଲା ? ବାପା ଆସିଥିଲେ ପରା ? କିଛି କହିଲେ ?

ନା, ସେ ମୂର୍ଖଟା କୁଆଡ଼େ କହୁଚି ଦୁଇ ବର୍ଷର ପୋଲିସ ଚାକିରି ଛାଡ଼ି ଦେଲେ ହୁଅନ୍ତା ନି ? ଆମର ଚାକିରି କଅଣ ହେବ ?

ତୁମେ କଅଣ କହିଲ ?

ମୁଣ୍ଡ ଖରାପ ନା କଅଣ ? ଚାକିରି ଛାଡ଼ି ଦେବି ? କାଲି ସକାଳେ ଯଦି ପେଟ୍ରୋଲ ଢାଳି ଦିଅନ୍ତି ? ମାସକୁ ତିନି ଚାରିଟା କେସ୍ ପରା ଆମେ କରୁଚୁଁ ?

ମୁଁ ପଚାରିଲି ସେ ଆଗଟା କଅଣ ହେଲା ? ସେ ସାଇଣ୍ଟିଷ୍ଟ କଥା ?

ସେ ହୋ ହୋ ହସିଲା । କହିଲା ଅପରେସନ ଯୁଗଳ କଥା ଶୁଣିଲା ପରେ ଆଉ ଆସିନି । ଆଉ ଆସନ୍ତା କି ? ଏବେ ବାପା ବୋଉ ଧରି ବସିଚନ୍ତି, ତୁ ଚାକିରି ଛାଡ଼ । ଆପଣ କହିଲେ, ମୁଁ ଏଥିରେ ରାଜି ହେଇପାରିବି ? ଚାକିରିରେ କିଛି ନହେଲେ ଗୋଟାଏ ସ୍ୱାଧୀନତା ଅଛି । ଅର୍ଥନୈତିକ ନୁହେଁ ଖାଲି, ମାନସିକ ମଧ । ସ୍ୱାଭିମାନ, ଗର୍ବ ସବୁ ଅଛି । ସେ ଚୁପ ହେଇଗଲା ।

କିନ୍ତୁ ଯୋଡ଼ି ହେଇଗଲା ପରେ ସେ ସ୍ୱାଧୀନତା, ସ୍ୱାଭିମାନ ବିଶେଷ କରି ନାରୀ ପକ୍ଷେ ସବୁ ଖର୍ବ ହେଇଯାଏନି ? ମୁଁ ପଚାରିଲି ।

ନାରୀଟି କେତେ ଅସହାୟ କହିଲେ ? ସମସ୍ତେ ଚାହାନ୍ତି ତା'ଠୁ ସ୍ୱାଧୀନତା ଅପହରଣ କରିବାକୁ । ସରକାର ମଧ । ନୁହେଁ ? ସେ ଟିକିଏ ରହିଗଲା । ତାପରେ କହିଲା ମୁଁ ଭାବୁଚି ଈଶ୍ୱର ନିଜେ ମଧ ଚାହିଁଥିଲେ ତାଙ୍କ ସୃଷ୍ଟି ଭିତରେ ନାରୀଟିକୁ ସଂପୂର୍ଣ୍ଣ ପରାଧୀନ କରି ସୋ କେସ୍ ଭିତରେ ରଖିବାକୁ । ନାରୀ ଶବ୍ଦ ପୂର୍ବରୁ 'ଗୃହପାଳିତ' ଶବ୍ଦ ଯୋଡ଼ା ଯାଉ ନାହିଁ ସିନା, ଯୋଡ଼ିଲେ କ୍ଷତି କଅଣ ? ପଶୁ ଓ ନାରୀ ଭିତରେ କଅଣ ଫରକ ଅଛି ?

ମୁଁ ଦେଖିଲି ତାଙ୍କ ଗଳା ଘାଗଡ଼ା ହେଇଆସୁଚି । କିନ୍ତୁ ତାଙ୍କ ଯୁକ୍ତିକୁ ପ୍ରତିହତ କରିବାକୁ ମୋ ପାଖରେ ମଧ ଶବ୍ଦ ନଥିଲା ।

ହଉ ରଖୁଚି । ପରେ କଥା ହେବି । ବହୁତ ସମୟ ନେଲିଣି । ସରି, ସେ ସୁଇଚ ଅଫ୍ କଲେ ।

ମୁଁ ତାଙ୍କୁ ସାନ୍ତ୍ୱନାର ଶବ୍ଦଟିଏ ମଧ ଦେଇପାରିଲିନି । ତାଙ୍କ ଅଭିଯୋଗ ମୋ ବିରୁଦ୍ଧରେ ନଥିଲା, ଥିଲା ସମଗ୍ର ପୁରୁଷ ସମାଜ ବିରୁଦ୍ଧରେ, ସୃଷ୍ଟି ତତ୍ତ୍ୱ ବିରୁଦ୍ଧରେ । ଏ ପ୍ରକାରେ ଭୁଲ ଥିଓରୀଟିଏ ଈଶ୍ୱରଙ୍କୁ କିଏ ଦେଲା କେଜାଣି ?

ମୁଁ ସେ ଦିନ ଥାନାକୁ ଗଲି ସତ କିନ୍ତୁ କାମରେ ମନ ଲଗେଇ ପାରିଲିନି । ଶୁଭ୍ରାର ମାର୍ମିକ ଆବେଦନ ଯେମିତି ମୋ ଆଗରେ ଧୀରେ ଧୀରେ ଶୁଭ୍ର ହେଇ ଉଠୁଥିଲା । ମୁଁ ଶୁଭ୍ରାର ଶୁଭ୍ରତା ଦେଖୁଚି । ମୋ ଆଗରେ ଗୋଟାଏ କମ୍ର, କମନୀୟ ଛାୟାମୂର୍ତ୍ତି ଆସି ଠିଆ ହେଲା । ଗୋଟାଏ ମଗ୍ନ ମୁଗ୍ଧ ବେଶ । ତାକୁ ଦେଖିଲେ ସ୍ୱାଭାବିକ ଭାବେ ନଜରେ ପଡ଼େ ସ୍ନେହ, ଶ୍ରଦ୍ଧା ଓ ପ୍ରେମର ଆବରଣ । ଘୋଡ଼େଇ ପକାଏ ସମଗ୍ର ଶରୀରକୁ ।

ମୋର ଏ.ଏସ୍.ଆଇ. ଆସି ମୋତେ ଦେଇଯାଇ ଥିଲେ ଆସନ୍ତାକାଲି ପାଇଁ କେତୋଟି ଜରୁରୀ ଚିଠି । ଆଗାମୀର କାର୍ଯ୍ୟକ୍ରମ ସେଥିରୁ ପ୍ରସ୍ତୁତ ହେବ । ମୁଁ କିନ୍ତୁ ସେ ସବୁ କିଛି ପଢ଼ି ପାରୁନଥିଲି । ମୋତେ ପ୍ରାୟ କିଛି ଦେଖାଯାଉନଥିଲା । ମୁଁ ଫାଇଲଟାକୁ ବନ୍ଦ କରି ଗୋଟାଏ ପାଖକୁ ରଖିଦେଲା ପରେ କିଶୋର ବାବୁ ମୋତେ କହିଲେ ଆପଣ ସେ ଗୁଡ଼ାକ ଦେଖିଲେ ନାହିଁକି ? ଗୋଟେ ଚିଟା ଜରୁରୀ ଥିଲା ବୋଧେ ।

ସେତେବେଳେ ଯାଇ ମୋ ଦେହରେ ଚେତା ପଶିଲା । ମୁଁ ଫାଇଲକୁ ପୁଣି ଥରେ ଖୋଲିଲି । ଚିଠିଟିଏ ଅଛି ଗୋପୀନାଥପୁର ଥାନା ଆଇ.ଆଇ.ସି.ଙ୍କର । ଦୁଇ ବର୍ଷ ତଳେ ପୋଲିସ କନଷ୍ଟେବଲ ଧନୁ ମାରାଣ୍ଡି ପୋଲିସ କ୍ୱାଟର୍ସ ପଛ ପଟେ ଆତ୍ମହତ୍ୟା କରିଥିଲା । ସେ କେଶ୍ ଏବେ ମଧ ଗଡୁଚି । ତାର ସ୍ତ୍ରୀକୁ ଚାକିରି ଦିଆଯାଇଥିଲା । କିନ୍ତୁ ସେ ତାକୁ ପ୍ରତ୍ୟାଖ୍ୟାନ କରି ଆଉ ଥରେ ବିବାହ କରିସାରିଚି ।

କୋର୍ଟରେ ଅଭିଯୋଗ ଅଛି ଯେ ଧନୁ ମାରାଣ୍ଡି ପ୍ରତି ହୋଇଥିବା ଅତ୍ୟଧିକ ମାନସିକ ଚାପ ତାର ଆତ୍ମହତ୍ୟାର କାରଣ ହେଇପାରେ ।

ଏଥିରେ ମୁଁ ଜଣେ ସାକ୍ଷୀ । ମୁଁ ସେତେବେଳେ ଡିଉଟି ଡିଷ୍ଟ୍ରିବ୍ୟୁସନ ଦାୟିତ୍ୱରେ ଥିଲି । କିନ୍ତୁ ଘଟଣାର କେନ୍ଦ୍ରବିନ୍ଦୁ 'ମାନସିକ ଚାପରେ' । ପୋଲିସର କାମ ଓ ମାନସିକ ଚାପ ଏମାନଙ୍କୁ କିପରି ବର୍ଣ୍ଣନା କରାଯାଇପାରିବ ? କୋର୍ଟରେ କିପରି ଭାବରେ ବର୍ଣ୍ଣନା କଲେ ସତ୍ୟର ଅପଳାପ ହେବ ନାହିଁ ଅଥଚ ଅପଳାପ ଭିତରେ ସତ୍ୟଟା ଦମ୍ଭର ସହିତ ଆତ୍ମପ୍ରକାଶ କରିପାରିବ ? ମୁଁ ଦ୍ୱନ୍ଦ୍ୱରେ ପଡ଼ିଗଲି ।

ମୁଁ ଗୋପୀନାଥପୁର ଥାନାରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ହେଇଯାଇଥାଏ । ଥାନାରେ ସେତେବେଳେ ପ୍ରାୟ ସମସ୍ତେ ଥାଆନ୍ତି । କେବଳ ଶୁଭ୍ରାକୁ ଛାଡ଼ି ଅନେକ ସମୟ ବନ୍ଧୁମାନଙ୍କ ସହିତ ବସି ଖୁସି ଗପ ସହିତ ଦୁଇଥର ଚା ପିଇ ସାରିଥିଲେ ମଧ ମୁଁ ଶୁଭ୍ରାକୁ ନଦେଖି କେମିତି ଗୋଟେ ଅଜଣା ଭାବରେ ପଚାରି ଦେଲି ଶୁଭ୍ରା ମେଡମକୁ ଦେଖୁନି ଯେ ?

ଏତେ ଡେରିରେ ପଚାରିଲ ଯେ ? ମୋର ସିନିଅର ଗୌତମବାବୁ ପଚାରିଲେ ।

ମୁଁ ଚମକି ପଡ଼ିଲି । ସେ ଏମିତି କଅଣ ପଚାରିଲେ ? ମୁଁ ଅପ୍ରସ୍ତୁତ ହେଇପଡ଼ିଲି । କହିଲି, ନା ସେମିତି କିଛି ନୁହେଁ । ଦେଖୁନାହିଁ ବୋଲି ପଚାରିଦେଲି ।

ହଉ ଯାଅ ଟିକେ ରେଷ୍ଟ ନିଅ । ତମ ଗୁମ ଏବେବି ସେମିତି ପଡ଼ିଛି । ଆଜି ତମ ପାଇଁ ପୁଣି ଚଳ ଚଞ୍ଚଳ ହୋଇ ଉଠିଚି । ମାସେ ହେଲା ଆଉ କେହି ଗେଷ୍ଟ ଏଠାକୁ ଆସି ନାହାନ୍ତି ।

ଜଣେ କନଷ୍ଟେବଲ ଆସି ଠିଆ ହେଲା । ସେଲ୍ୟୁଟ ମାରି କହିଲା ବଡ଼ ବାବୁ ଡକେଇଚନ୍ତି ।

ମୁଁ ତାଙ୍କ ଡାକକୁ ହିଁ ଅପେକ୍ଷା କରିଥିଲି । ଆସନ୍ତାକାଲି କୋର୍ଟକୁ ଯିବା ପୂର୍ବରୁ ତାଙ୍କ ସହିତ ଆଲୋଚନା ଜରୁରୀ ।

ମୁଁ ଭିତରକୁ ପଶିବା ମାତ୍ରେ ସେ ମୋତେ କୁଣ୍ଢେଇ ପକେଇଲେ । ମୋ ପ୍ରତି ତାଙ୍କର ଶ୍ରଦ୍ଧା ଅମାପ । ରାଜ୍ୟର ସିନିଅର ମୋଷ୍ଟ ଇନସପେକ୍ଟରଙ୍କ ଭିତରେ ଜଣେ । ଖୁବ ଶୀଘ୍ର ଡି.ଏସ.ପିକୁ ପ୍ରମୋଶନ ହେଇଯିବ । ଅମାୟିକ ସ୍ୱଭାବ ।

କଥା ଆରମ୍ଭ ହେଉ ହେଉ ମୁଁ ଯେତେବେଳେ ଆସନ୍ତାକାଲିର କେସ୍ କଥା ଉଠେଇଲି ଏବଂ ପଚାରିଲି ତାଙ୍କ ମତାମତ, ସେ ହୋ ହୋ ହସିଲେ । କହିଲେ ସେଇଟା ଗୋଟାଏ କି କେସ୍ ହୋ ? ଆତ୍ମହତ୍ୟା କରି ମଲା ଯଦି ମଲା । ତାକୁ କିଏ କଅଣ କରିବ ? ଆତ୍ମହତ୍ୟା ପାଇଁ କିଏ ଦାୟୀ ହେବ ? ତୁମେ ସେ କଥା ଛାଡ଼ । ଏବେ ଆମେ ଘରୋଇ କଥା ଆଲୋଚନା କରିବା । ଶୁଭ୍ରାର ବାପା ମାଆ ଆସିଚନ୍ତି । ସେମାନେ ଚାଲି ଯାଇ ଥାଆନ୍ତେ । ମୁଁ ତାଙ୍କୁ ଅଟକେଇଚି । ଆସିଚନ୍ତି ଯେତେବେଳେ ଦି'ଦିନ ରହି ବୁଲାବୁଲି କରି ଯିବେ ।

ସେ ଟିକିଏ ରହିଗଲେ ତା'ପରେ କହିଲେ "ଶୁଭ୍ରା ଭଲ ଝିଅଟିଏ । ନୁହେଁ ? ଭାରୀ ଷ୍ଟ୍ରେଟ୍ ଫରଓ୍ୱାଡ଼ । ତାକୁ କାମ ଦେଲେ ଜଣେ ନିଶ୍ଚିନ୍ତ ହେଇ ବସିଯାଏ । ପଛକୁ ଫେରିବା ତା ଜାତକରେ ନଥାଏ ।"

ତା' ପରେ ସେ ଚାରିଆଡ଼କୁ ଅନେଇଲେ । "କୁଆଡ଼େ ଗଲା କେଜାଣି ଏତେବେଳଯାଏ । ତମର ରହଣି ଓ ଖିଆପିଆର ଦାୟିତ୍ୱ ମୁଁ ତାକୁ ଦେଇଥିଲି ।"

ମୁଁ ହଠାତ ତାଙ୍କଠାରୁ ଏ ସବୁ କଥା ଶୁଣିବି ବୋଲି ଆଶା କରି ନଥିଲି । ମୋ ଭିତରେ ଧନୁ ମାରାଣ୍ଡିର ମାମଲା ମୋତେ ଡରାଉଥିଲା । ତାର ଭୂତ ରାତିଦିନ ମୋ ଆଗରେ ଆସି ଠିଆ ହେଉଥିଲା । ମୁଁ ଜାଣିଥିଲି ପ୍ରତିପକ୍ଷର ଓକିଲ ଜଣେ ନାମଜାଦା ଆଇନ ବ୍ୟବସାୟୀ । ପୋଲିସ ବିରୁଦ୍ଧରେ ଲଢ଼ି ସେ ବହୁବାର ଜିତିଛନ୍ତି । ସେ ଏପରି ଜଣେ ଓକିଲ ଯେ କି ମାମଲା ଭିତରେ ପୋଲିସର ଅଧିକାର ଦିଗଟିକୁ ଅତି ପରିଷ୍କାର ଦେଖେଇ ପାରନ୍ତି । ସେଇଟା ହିଁ ତାଙ୍କର ଗୋଟାଏ 'ହବି' ବୋଲି ସେ କହନ୍ତି ।

ଅଥଚ ସେ କଥା ନଭାବି ମୋର ପ୍ରବୀଣ ଇନ୍ସପେକ୍ଟର ଏବେ ଗୋଟାଏ ରୋମାଣ୍ଟିକ ଚିନ୍ତାଧାରା ନେଇ ବ୍ୟସ୍ତ । ମୁଁ ତାଙ୍କ କଥାରେ କଅଣ କହିବି ଠିକ କରିପାରୁନଥିଲି । କେଜାଣି କେମିତି ମୋର ଶୁଭ୍ରା ପ୍ରତି ଯେ ଦୁର୍ବଳତା ପ୍ରକାଶ ପାଇ ନାହିଁ, ସେ କଥା ଜୋର ଦେଇ କହିପାରିବ

ନାହିଁ । ହୁଏତ ହେଇଥିବ, ପାଖରେ ଥିଲାବେଳେ ଯାହା ରୂପ ପାଇ ନଥିଲା ଏବେ ଦୂରେଇ ଗଲା ପରେ ତାର ଅଙ୍କୁରୋଦ୍‌ଗମ ହେଇଥିବ । ଏକ ସ୍ୱାଭାବିକ ପ୍ରକ୍ରିୟା ।

ମୋର ପିତୃତୁଲ୍ୟ ଇନ୍‌ସପେକ୍ଟରଙ୍କ କଥାରେ ମୁଁ ହଁ କି ନା କିଛି କହିପାରିନଥିଲି । ତାଙ୍କ ମୁହଁକୁ ନଚାହିଁ ମୁଁ ଖାଲି ଟିକିଏ ହସି ଦେଇଥିଲି ମାତ୍ର ।

ହଉ ଯାଅ । ଖାଇ ପିଇ ଟିକେ ରେଷ୍ଟ ନିଅ । କାଲି ପୁଣି ଦେଖା ।

ମୁଁ ମୋ ରୁମ ଭିତରକୁ ଆସିଲି । ଦେଖିଲି କୋଠରିଟି ବେଶ ସଜାସଜି ହେଇ ରଖାଯାଇଛି । ବେଶ ରୁଚିପୂର୍ଣ୍ଣ ଭାବରେ ! ଡାଇନିଂ ଟେବୁଲଟିକୁ ଦେଖିବାର କଥା । ଗୋଟାଏ ପୋଲିସ କନଷ୍ଟେବଲ ଏମିତି ସଜେଇଥିବ ବୋଲି ବିଶ୍ୱାସ ହୁଏନା । ତେବେ ସମଗ୍ର ଥାନାର ଯେ ଅନେକ ପରିବର୍ତ୍ତନ ହେଇଛି, କଥାଟା ଏଥିରୁ ବୁଝିହୁଏ । ମୋ ଜିନିଷଗୁଡ଼ାକ ମଧ ଚମତ୍କାର ଭାବେ ରଖାଯାଇଛି । ଭାବିଲି ଘର ସଜେଇବାର ଅଦ୍‌ଭୁତ କଳା ତାକୁ ଜଣାଥିବ ନିଶ୍ଚୟ । ହଠାତ୍ ମୋର ନଜର ପଡ଼ିଲା, ଘରର କୋଣରେ ଥିବା ଗୋଟାଏ ଝୁଡ଼ି ଉପରେ । ତା'ରି ଭିତରୁ ଉଙ୍କିମାରୁଛି ଗୋଟାଏ ଫୁଲତୋଡ଼ାର କିଛି ଅଂଶ । ଶୁଖିଲା ପାଖୁଡ଼ାଗୁଡ଼ିକ ତେଣରୁ ମୁଣ୍ଡ ଟେକି ଠିଆ ହେଇ ରହିଛି । ମୁଁ ତା ପାଖକୁ ଗଲି ଏବଂ ଦୁଇ ହାତରେ ଟୋଳି ଧରିଲି । ଫୁଙ୍କାଫୁଙ୍କି କରି ଧୂଳି ସବୁ ଝାଡ଼ି ସଫା କରିଦେଲି । ତା'ପରେ ମୁହଁ ପାଖକୁ ନେଇ ଶୁଙ୍ଘିବାକୁ ଯାଉଥିଲି ।

ବାହାରୁ କେହି ଜଣେ ଆସୁଥିବାର ପାଦ ଶବ୍ଦ ।



ସାଗରିକା- ୨୦୦୯

# ଫେଣ

ବିନୟ ବାବୁଙ୍କର ସେଦିନ ଅଫିସରେ ଶେଷ ଦିନ । ମାର୍ଚ୍ଚ ୩୦ ତାରିଖଟାକୁ ସେ ବହୁ ଦିନୁ କେଲେଣ୍ଡରରେ ଦେଖି ଆସୁଥିଲେ । ସହରର ପ୍ରସିଦ୍ଧ ପୁସ୍ତକ ବ୍ୟବସାୟୀଠାରୁ ସେ ଗୋଟିଏ ବଡ ପୃଷ୍ଠାରେ ବର୍ଷକର ୧୨ ମାସ ଥିବା ଏବଂ ତାର ପ୍ରଥମ ଭାଗରେ ଥିବା କମ୍ପାନୀର ନାଁ ତଳକୁ ମହାତ୍ମା ବୁଦ୍ଧଙ୍କ ସୁନ୍ଦର ତଥା ରଙ୍ଗୀନ ଚିତ୍ର ଥିବା କେଲେଣ୍ଡରଟିକୁ ସେ ପ୍ରାୟ ଦେଖନ୍ତି । ସେଥିରେ ଗୋଟିକ ପରେ ଗୋଟିଏ ଦିନ ଏବଂ ତାପରେ ଗୋଟିଏ ମାସର ଧୀର ମନ୍ଥର ଗତିକୁ ସେ ପ୍ରତିଦିନ ଦେଖନ୍ତି ଏବଂ ମନେ ମନେ ଗଣି ଦିଅନ୍ତି, ଆଉ କେତେ ଦିନ ରହିଲା ?

ଆଃ, ସେଦିନ ବିନୟ ଭାବୁଥିଲେ, ଦୀର୍ଘ ୩୨ ବର୍ଷ ସେ ଏଇ ଅଫିସରେ କଟେଇ ଦେଲେଣି । ମଝିରେ ଦୁଇ ତିନି ବର୍ଷ ପାଇଁ ସେ ବଦଳି ହେଇ ଯାଇଥିଲେ ପୁରୀ ଓ ନୟାଗଡ଼ । ସମୟର ଆଖି ପାଉନଥିବା ସୁଅ ଭିତରେ ସାମାନ୍ୟ ଦୁଇ ତିନି ବର୍ଷ କେତେ ଛୋଟ ? ବିନ୍ଦୁଟିଏ ପରି । ଆଖିରେ ଧରା ପଡ଼େନି । ବିନୟ ବାବୁ ଫେରି ଆସନ୍ତି ଏଇ ଅଫିସକୁ । ବଡ଼ ବଡ଼ ଅଫିସରମାନଙ୍କ ମତ, ବିନୟ ବାବୁ ନଥିଲେ ଏ ଅଫିସ ଅଚଳ ହେଇଯିବ । ଅଚଳ ବି ହେଇଯିବ ଏଠାର କାମ ଓ କାର୍ଯ୍ୟଧାରା ।

ଆଉ ଆସନ୍ତା କାଲିଠାରୁ ? କୋଉ କାମ ଅଟକି ଯିବ କାଲିଠାରୁ ? ଅଫିସ ଅଚଳ ହେଇଯିବ ? ଏ ଫାଇଲମାନେ ବନ୍ଦୀ ହେଇଯିବେ ଆଲମାରୀ ଭିତରେ ? ନିଃଶବ୍ଦରେ ଶୋଇ ରହିବେ ଏଠାର ଟାଇପ ମେସିନମାନେ ? କାଠ ହଣା ଚଢ଼େଇର ଠୁକ୍ ଠାକ୍ ଶବ୍ଦ ପରି ସେମାନେ ତାଙ୍କର ଜୀବନର ଜୟଗାନ କରିବେ ନାହିଁ ? ଚାଲିବ ନାହିଁ ସେମାନଙ୍କ ଉପରେ ଗାରିମା ମହାପାତ୍ରର ଗୋରାଗୋରା ଆଙ୍ଗୁଳିଗୁଡ଼ିକ ? ଜୀବନର ସଂକେତ ବହନ କରୁଥିବା A B C Dର ଅକ୍ଷରଗୁଡ଼ିକ ଆଉ ଗାରିମାର ଶିଳ୍ପୀ ବିଦ୍ୟାଧର ବର୍ମାଙ୍କ ଅଙ୍କିତ ମତ୍ସ୍ୟଗନ୍ଧା ନାରୀର ସରୁ ଓ ସୁନ୍ଦର ଆଙ୍ଗୁଳିର ସ୍ପର୍ଶ ପାଇବେ ନାହିଁ ? ନାରୀର ସ୍ପର୍ଶ ଖାଲି ପୁରୁଷକୁ ସଜୀବ କରେ ନାହିଁ, ନିର୍ଜୀବକୁ ମଧ ସଜୀବ କରେ । କଅଣ ଥାଏ ସେ ସ୍ପର୍ଶରେ ? କି ଉପାଦାନରେ ଗଢା ସେ ସ୍ପର୍ଶ ? ବିଜ୍ଞାନ କଳି ପାରିନାହିଁ । ଈଶ୍ୱର ନିଜେ ମଧ କଳି ପାରିନଥିବେ । ସେ କେବଳ ତାଙ୍କ ସୃଷ୍ଟି ଦେଖି ବିମୋହିତ ହେଉଥିବେ । ଏଇଠି ଈଶ୍ୱରଙ୍କ ଦୁର୍ବଳତା ବାରି ହେଇଯାଏ ।

ବିନୟ ବାବୁଙ୍କର ମନେହେଲା । ଆଜି ଯେମିତି ଅଫିସଟା ଅପେକ୍ଷାକୃତ ନୀରବ ଓ ନିଥର ହେଇଯାଇଚି । କର୍ମ ଚଞ୍ଚଳତା ଧ୍ରୁମେଇ ଯାଇଚି । ଅଫିସକୁ ଯୋଉମାନେ ଆସୁଚନ୍ତି ଆଉ ଯାଉଚନ୍ତି ସେମାନେ କେମିତି କେଜାଣି ଗୋଟାଏ ମେସିନ ପରି ଖାଲି ଗତି କରୁଚନ୍ତି । ସବୁଠି କେମିତି ଗୋଟାଏ ଖାଁ ଖାଁ ଭାବ । ପବନଟା ଅଟକି ଯାଇଚି ଯେମିତି ।

ବିନୟ ଭାବୁଥିଲେ ସାରା ଅଫିସରେ ଏ ପ୍ରକାର ଗୋଟାଏ ଅସ୍ୱାଭାବିକତା ସହିତ ତାଙ୍କର କି ସମ୍ପର୍କ ? ବିନୟ ନିଜକୁ ନିଜେ ସେ ସମ୍ପର୍କ ସହିତ ଯୋଡ଼ି ହେଇ ଯାଉଥିଲେ । ତାଙ୍କ ସହିତ ସଂପର୍କ ନାହିଁ ଆଉ କଅଣ ? ଜୀବନଟା ଯାକ ନିଜର ସବୁ କିଛି ଢାଳି ଦେଇ ଯିଏ ଅଫିସଟାକୁ ଅଫିସ ପରି ଜୀବନ୍ତ କରି ରଖିଥିଲେ, ଶୃଙ୍ଖଳାର ସୁସ୍ଥ ବାୟୁମଣ୍ଡଳଟିଏ ଯିଏ ଅଫିସ ଚାରି ପାଖରେ ସୃଷ୍ଟି କରି ପାରିଥିଲେ, ଡିପାର୍ଟମେଣ୍ଟରେ ଆଇ.ଏ.ଏସ୍.ଙ୍କ ଠାରୁ ମନ୍ତ୍ରୀଯାଏ ଯାହାଙ୍କର ପ୍ରଶଂସା କଥା ପଡ଼ିଲା ମାତ୍ରେ, ଓଠ ଉପରେ ଓହଳି ପଡୁଥିଲା 'କାମର ମଣିଷଟିଏ' ସେଇ ବିନୟ ବାବୁ ଆସନ୍ତା କାଲିଠାରୁ ଆଉ ଆସିବେ ନାହିଁ । ସେ ଲକ୍ଷଣ କଅଣ ଏ ଆବହାୱାରୁ ଜଣାପଡୁ ନାହିଁ ?

ଆସନ୍ତା କାଲିଠାରୁ ଆଉ ଗାରିମାକୁ ଦେଖିବାକୁ ମିଳିବ ନାହିଁ । ଗାରିମା ତାଙ୍କ ସାମନାରେ ମାତ୍ର ୧୦ ଫୁଟ୍ ଦୂରରେ ବସେ । ଆଗରୁ ସେ ଅନେକ ଦୂରରେ ବସୁଥିଲା । ପ୍ରାୟ ଶହେ ଫୁଟ ଦୂରରେ । ଗୋଟାଏ କୋଣରେ । କେବଳ ଲଞ୍ଚ ସମୟରେ ସେ ଓ ତା ସହିତ ନିଳିମା, ସ୍ୱପ୍ନା ଓ ଜ୍ୟୋତ୍ସ୍ନା ଆସି ଏଇ ପାଖରେ ଥିବା ୱାସ୍ ବେସିନ ପାଖ ରୁମ୍‌ରେ ବସି ଖାଆନ୍ତି । ସେତିକିବେଳେ ଗାରିମା, ଆବଶ୍ୟକ ଥାଉ ବା ନ ଥାଉ 'ସାର ନମସ୍କାର' କହି ପଦେ ବି ପଦ କଥା ହୁଏ ବିନୟ ବାବୁଙ୍କ ସହିତ । ବେଳେବେଳେ ଅନ୍ୟମାନେ ମଧ ବା ସହିତ ମିଶି ଯାଆନ୍ତି । ବିନୟ ବାବୁ ସେତେବେଳେ କାମ ବନ୍ଦ କରିଦିଅନ୍ତି । ଏଇଟା ଅନିଚ୍ଛାକୃତ ନୁହେଁ । ଇଚ୍ଛାକୃତ କାମ ତ ସବୁବେଳେ । ହାତ ଚାଲିଥାଏ । ଗୋଟାଏ ମିନିଟ ମଧ ଅଟକେ ନାହିଁ । ଆଖି ଉପରକୁ ଉଠେ ନାହିଁ, ଏଇ ଚାରି ଜଣଙ୍କ ଭିତରୁ କିଏ ସବୁଠାରୁ ବେଶି ସୁନ୍ଦରୀ, କିଏ ବେଶି ପ୍ରଗଲ୍‌ଭା ଏବଂ ସର୍ବୋପରି କିଏ ବିନୟ ବାବୁଙ୍କୁ ସବୁଠାରୁ ବେଶି ଆନ୍ତରିକ ଭାବେ ପସନ୍ଦ କରେ ସେ କଥା ମଧ ସେ କେବେ ଚିନ୍ତା କରି ନାହାନ୍ତି । ବେଳେବେଳେ ସେ ସମସ୍ତଙ୍କୁ ସମାନ ବୋଲି ଭାବୁଥିଲେ ମଧ ପରଦିନ ସେ ତାଙ୍କ ମତ ବଦଳେଇ ଦିଅନ୍ତି ଏବଂ ଆଉ ଦୁଇ ଦିନ ପରେ ଆଉ ଜଣଙ୍କ ଉପରେ ମତ ଥୋଇ ଦିଅନ୍ତି । ତା ସତ୍ତ୍ୱେ ଗାରିମାର ହସଟା ତାଙ୍କୁ ଅନେକଟା ଭଲ ଲାଗେ । ଏବଂ ଅନେକ ସମୟରେ ସେ ଭାବନ୍ତି ଗାରିମାର ହସଟାର ଉତ୍ସ ଓଠ କି ଦାନ୍ତ ମୂଳରେ ନାହିଁ, ଅଛି ଅନ୍ତ ମୂଳରେ । ସେତେବେଳେ ବିନୟ ବାବୁ ଅକାରଣରେ ଗାରିମାକୁ ଅନେକ ସମୟ ପର୍ଯ୍ୟନ୍ତ ଚାହିଁ ରହନ୍ତି, ଯଦିଓ ଗାରିମା ମନରେ ସେମିତି ଗୋଟାଏ ଉଲ୍ଲାସପଣ ସେ ସେତେବେଳେ ମୋଟେ ପାଆନ୍ତି ନାହିଁ ।

ଗାରିମା ଏ ଯାଏ ଅଫିସ ଆସି ନାହିଁ । ଅନ୍ୟମାନେ ବୋଧହୁଏ ଆସି ଜାଣିଲେଣି । ସେମାନଙ୍କର କଳରବ ଅସ୍ଥାୟୀ ପାର୍ଟିସନ ୱାଲ ସେ ପଟୁ ଶୁଭୁଚି । ଗାରିମାର ସ୍ୱର ଶୁଭୁ ନାହିଁ ।

ଗତ ଦୁଇଦିନ ତଳେ ଗାରିମା ଆସି କହୁଥିଲା ଏ ଜାଗାଟା ତାକୁ ଭଲ ଲାଗୁ ନାହିଁ । ଝରକା ପାଖ ହୋଇଥିବାରୁ ଦିନ ତିନିଟା ପରେ ତା ଉପରେ ଖରା ପଡୁଚି ।

ଆଶ୍ଚର୍ଯ୍ୟ, ସେ କଥା କଅଣ ସେ ଆଜି ଜାଣିଲା ? ତିନିଚାରି ବର୍ଷ ହେଲା ଗାରିମା ସେ କୋଣ ଜାଗାରୁ ଏଠାକୁ ଉଠି ଆସିଲାଣି । ଏ ତିନି ଚାରି ବର୍ଷ ହେଲା ତା ଉପରେ ଖରା ପଡୁ ନଥିଲା ? ସୂର୍ଯ୍ୟ କଅଣ ଯା ଭିତରେ ତାଙ୍କ ଗତି ପଥ ବଦଳେଇ ଦେଲେ କେବଳ ଗାରିମା ପାଇଁ ?

ଗାରିମା କାହିଁକି ସେତେବେଳେ ଏଠାକୁ ଉଠିଆସିବାକୁ ଅନୁମତି ମାଗୁ ଥିଲା ? ପୁଣି ଏବେ କାହିଁକି ସେ ଏଠୁ ଉଠିଯିବ ? ଯା ପଛରେ ବିନୟ ବାବୁଙ୍କ ସହିତ କିଛି ସମ୍ପର୍କ ଅଛି କି ? କଅଣ ହେଇପାରେ ସେ କାରଣ ? ବିନୟ ବାବୁଙ୍କର ମନେ ହେଲା ସେ ଗୋଟାଏ ନିରର୍ଥକ କଥାରେ ଏତେ ବେଳଯାଏ ଘାଣ୍ଟି ଚକଟି ହେଉଚନ୍ତି । ଆଉ କେଇଟା ଘଣ୍ଟା ପରେ ତାଙ୍କୁ ଏଠୁ ସବୁଦିନ ପାଇଁ ଛୁଟି ମିଳିଯିବ । ସେ ଆଉ ଏଠାକୁ ଆସିବେ ନାହିଁ । ଠିକ୍ ଦଶଟା ବେଳକୁ ତାଙ୍କ ଆସିବାକୁ କେହି ଏଠି ଅପେକ୍ଷା କରିବେ ନାହିଁ । ଅଫିସର ପିଅନ ଚପରାଶି ତାଙ୍କୁ ନମସ୍କାରଟିଏ କରିବାକୁ ଅଫିସ ଦୁଆର ମୁହଁ ପାଖରେ ନସରପସର ହେବେ ନାହିଁ । ଗତ କାଲିଠାରୁ ଏ ଚେଆରକୁ କିଏ ଆସିବେ ବୋଲି ପିଅନ ନରହରି ଓ କନିଷ୍ଠ କିରାଣି ସୁବ୍ରତ ତିନି ଚାରିଥର ପଚାରି ସାରିଲେଣି । କାହିଁ ନରହରି ତ ଏ ଯାଏ ଆଉ ଖଣ୍ଡେ ପାନ ଦେଇନାହିଁ ? ଚା ଖାଇବା କଥା ପଚାରୁଥିଲା ଯେ କିନ୍ତୁ ସେ ପଚାରିବା ପଛରେ ବିନୟ ବାବୁଙ୍କ ଉତ୍ତରାଧିକାରୀଙ୍କ ନାଁ ମଧ ବାରମ୍ବାର ପଚାରିଥିଲା ।

ଗାରିମା ଆସିଲା ଏବଂ ହାତରେ ଧରିଥିବା ବେଗଟିକୁ ପାଖ ଆଲମାରୀରେ ରଖିଲା । ତା' ପଛରେ ଲୋକଟିଏ । ତା ହାତରେ ଯାହା ଥିଲା ତାକୁ ଦେଖି ହେଉ ନଥିଲେ ମଧ ତାର ଆକାର ଓ ପ୍ରକାରରୁ ଜଣା ପଡୁଥିଲା ପୁଷ୍ପ ଗୁଚ୍ଛ ଏବଂ ଫୁଲମାଳ ହେବ ବୋଧେ । ବିନୟ ବାବୁ ବୁଝିଲେ ସେ ଦାୟିତ୍ୱ ଗାରିମାକୁ ଦିଆଯାଇଥିଲା । ବୋଧହୁଏ ଗାରିମା ଆସିଲାବେଳେ ମେନ ମାର୍କେଟ ଦେଇ ଆସେ ଏବଂ ସେଠି ରାସ୍ତାର ଦୁଇ କଡରେ ଆଜିକାଲି ବେଶ କିଛି ଫୁଲ ବ୍ୟବସାୟୀ ବସିଲେଣି ।

ଗାରିମା ଫୁଲଗୁଡ଼ାକ ପାଖରେ ଥିବା ଟେବୁଲ ଉପରେ ସଜାଇ ରଖୁ ରଖୁ ବିନୟ ବାବୁଙ୍କୁ ଥରେ ଦେଖିଲା ଏବଂ ହସି ଦେଲା । ହସ ତ ରଖି ହୁଏ ନାହିଁ । ଯେମିତି ଋଣ କି ଉପକାର ରଖି ହୁଏ ନାହିଁ । ଫେରେଇବାକୁ ପଡ଼େ ।

ସେଦିନ ବିନୟବାବୁଙ୍କ ବିଦାୟ ସମ୍ବର୍ଦ୍ଧନା ସଭାରେ ଯେ ଖାଲି ତାଙ୍କ ଡିପାର୍ଟମେଣ୍ଟର ଲୋକମାନେ ଯୋଗ ଦେଇଥିଲେ ତା ନୁହେଁ, ପାଖକୁ ଲଗାଲଗି ଆଉ ଦୁଇ ତିନିଟା ଡିପାର୍ଟମେଣ୍ଟର କର୍ମଚାରୀ ଓ ଦୁଇ ତିନି ଜଣ ଅଫିସର ମଧ ଯୋଗ ଦେଇଥିଲେ । ଯୋଉମାନେ ଅନ୍ତତଃ ବିନୟବାବୁଙ୍କୁ ଜାଣନ୍ତି ସେମାନେ ସ୍ୱତଃ ପ୍ରବୃତ୍ତ ହେଇ ଆସିଥିଲେ । ବଡ଼ ହଲଟି ଏକ

ଦମ ପୂରି ଯାଇଥିଲା । ସଭାରେ ବସିଥିଲା ବେଳେ ବିନୟ ବାବୁ ବୁଝି ପାରୁନଥିଲେ ସେ ଏତେ ଲୋକଙ୍କ ଶ୍ରଦ୍ଧା ଭାଜନ କେବେ ଓ କେମିତି ହେଲେ ? ମଣିଷ ନିଜ ଅଜାଣତରେ ଅନ୍ୟର ମନ ପାଖରେ ଆଉଜି ହୋଇ ପଡ଼ିପାରେ କି ? ଏମିତି ଛନ୍ଦାଛନ୍ଦି ହେବାର ମାନସିକତା ମଣିଷ ଭିତରେ ଅକାଳେ ସକାଳେ ସୃଷ୍ଟି ହୋଇପାରେ ? ତାକୁ ମନସ୍ତତ୍ତ୍ୱବିଦ୍‌ମାନେ କଅଣ କହନ୍ତି ? ଏ ଅବସ୍ଥା କେବଳ ପୁରୁଷର ପୁରୁଷ ସହିତ ନା ପୁରୁଷର ସ୍ତ୍ରୀ ସହିତ ମଧ ସୃଷ୍ଟି ହୋଇପାରେ ? ଦୁଇଟା ଯାକ ସମାନ କି ?

ବିନୟ ବାବୁ ଆସ୍ତେ ଆସ୍ତେ ବେଶି ଭାବ ବିହ୍ୱଳ ହୋଇ ଉଠୁଥିଲେ । ସେ ଆହୁରି ଉଲ୍ଲସିତ ହୋଇ ଉଠିଲେ ଯେତେବେଳେ ଗରିମା ନିଜେ ଗୋଟାଏ ବଡ ଫୁଲ ତୋଡ଼ା ଧରି ତାଙ୍କ ଆଡ଼କୁ ଆସିଲାବେଳେ ସଭାପତିଙ୍କ ଆସନରେ ବସିଥିବା ବିଭାଗୀୟ ସେକ୍ରେଟେରୀ ଓ କମିଶନର ମାଇକରେ କହିଲେ ଏଥର ବିନୟବାବୁଙ୍କୁ ସମ୍ବର୍ଦ୍ଧନା ଜଣାଉଛନ୍ତି ସେକ୍ରେଟେରୀଏଟ୍ ମହିଳା କର୍ମଚାରୀ ସଂଘ ତରଫରୁ ଗରିମା ମହାପାତ୍ର ।

ଗରିମା ସ୍ୱଭାବତଃ ଲଜ୍ଜାଶୀଳା । ସବୁବେଳେ ପ୍ରାୟ ଚୁପଚାପ । ନିହାତି ଦରକାର ନଥିଲେ ସେ କେବେ ଏଠି ସେଠି ଗପୁ ଥିବାର କେହି ଦେଖି ନାହିଁ । ତାର ବନ୍ଧୁ ମହଲ ମଧ ସୀମିତ । ସେ ମହଲ ଭିତରେ ପୁରୁଷ କ୍ୱଚିତ ଦେଖାଯାଆନ୍ତି । ସେ ଅବସ୍ଥାରେ ସମଗ୍ର ନାରୀ ସମାଜ ତରଫରୁ ଗରିମା ନିଜେ ଆସି ଏମିତି ଆଖି ଦୃଶିଆ ଫୁଲ ତୋଡ଼ାଟେ ସଭାରେ ସମସ୍ତଙ୍କ ସାମନାରେ ଦେବା କଥାଟାକୁ ବିନୟ ବାବୁ ନିହାତି ସହଜ କିମ୍ବା ସ୍ୱାଭାବିକ ବୋଲି ମନେ କରୁନଥିଲେ ମଧ ତାକୁ ଗରିବା ପକ୍ଷେ ଗୋଟାଏ ବାଧ୍ୟବାଧକତା ହୋଇ ପାରିଥାଏ ବୋଲି ଧରି ନେଲେ । ଆତ୍ମୀୟତା ଥିଲେ ଏମିତି ହୋଇଥାଏ । ଆତ୍ମୀୟତାର ପରିପ୍ରକାଶ ମାତ୍ର ।

ସେଦିନ ସଭାରେ ସଭାପତିଙ୍କ ଭାଷଣହିଁ ପ୍ରଣିଧାନ ଯୋଗ୍ୟ । ସେ କହିଲେ ଆପଣମାନେ ତ ଦେଖୁଛନ୍ତି ବିନୟବାବୁଙ୍କୁ । ଆଜି ଯଦି ତାଙ୍କର ଏଠି ଆମେ ଫେଆରୱେଲ ମିଟିଂର ଆୟୋଜନ କରୁ ନ ଥାଆନ୍ତୁ ତେବେ ହୁଏତ ତାଙ୍କ ଲୋକେ କହନ୍ତେ ମୋର ଫେଆରୱେଲର ଆୟୋଜନ କରିବାକୁ ।.ତେଣୁ ରିଟାୟାରମେଣ୍ଟ ସହିତ ମଣିଷର ବୟସର ସମ୍ପର୍କ ନାହିଁ । ରିଟାୟାରମେଣ୍ଟ ଗୋଟାଏ କଥା ଏବଂ ବୟସ ଆଉ ଗୋଟାଏ କଥା । ବୟସ ମନର ଦାସ ହୋଇଥିଲା ବେଳେ ରିଟାୟାରମେଣ୍ଟ ଆମ ନାଲିଫିତାର ଦାସ । ଏମାନେ ଗୋଟାଏ ନଈର ଦୁଇ କୂଳ ଭଳି ଆଗକୁ ଆଗକୁ ମାଡ଼ି ଚାଲି ଥାଆନ୍ତି । ସେ ଟିକିଏ ରହିଗଲେ ତାପରେ ବିନୟ ବାବୁଙ୍କ ଆଡ଼େ ଚାହିଁ ହସି ହସି କହିଲେ ମୁଁ ବର୍ତ୍ତମାନ ତାର ଗୋଟିଏ ଉଦାହରଣ ଦେବି । ସମସ୍ତେ ଚୁପ ଓ ଉତ୍କଣ୍ଠାର ସହିତ ତାଙ୍କ ଆଡ଼କୁ ଅନାଇ ରହିଲେ । ବିନୟବାବୁ ମଧ ତାଙ୍କୁ ଦେଖିଲେ । କଅଣ କହିବେ ସେ ?

ଆପଣମାନେ ସମସ୍ତେ ଏବେ ଚା ପିଇ ସାରିଲେଣି । ଏଠି ମୁଁ ଓ ବିନୟବାବୁ ପ୍ରଭୃତି ଆମେ ଯେତେ ସବୁ ବସିଛୁ, ଆମେ ବି ଚା ପିଇ ସାରିଲୁଣି । ଏଇ ଚା ପିଇଲାବେଳେ ମୁଁ

ସମସ୍ତଙ୍କୁ ଲକ୍ଷ୍ୟ କରୁଥିଲି । କୋଉଠି କିଛି ପରିବର୍ତ୍ତନ ଲକ୍ଷ୍ୟ କଲି ନାହିଁ । ତଥାପି କୋଉଠି କିଛି ପରିବର୍ତ୍ତନ ଥାଇପାରେ ତାହା ଜଣାପଡ଼ିଲା ନାହିଁ । ମୋର ମନେହେଲା ବିନୟ ବାବୁ ଚା ପିଉଥିଲାବେଳେ କପଟିକୁ ଭଲ ଭାବରେ ଉପଭୋଗ କରୁଚନ୍ତି ।

ଚମକି ପଡ଼ିଲେ ବିନୟ ବାବୁ । ସଭାପତି ମହୋଦୟ ପ୍ରକାରାନ୍ତରେ ତାଙ୍କୁ ଥଟ୍ଟା କରୁ ନାହାନ୍ତି ତ ? ତାଙ୍କୁ ଚା କପ୍‌ଟି ଗାରିମାହିଁ ଦେଇଥିଲା । ଅବଶ୍ୟ ସେ ମଞ୍ଚରେ ଥିବା ଅନ୍ୟ ସମସ୍ତଙ୍କୁ ଚା ଦେଇଚି । ତେବେ କଅଣ କହୁଚନ୍ତି ସଭାପତି ମହୋଦୟ ? ସେ ଦେଖିଲେ ଗାରିମା ଯେତେବେଳେ ତାଙ୍କୁ ଚାହିଁ ହସୁଚି । ସେ ଦେଇଥିବା ଚା କପ୍‌ଟିକୁ ବିନୟବାବୁ ଉପଭୋଗ କରିଚନ୍ତି ବୋଲି ସଭାପତି କହିଲା ପରେ ତା ମନରେ ଉଲ୍ଲସିତ ପଣଟିଏ ଉଙ୍କି ମାରିଲା କି ଆଉ ?

ଆଃ, ଏଇଟା ତ ସବୁ ନାରୀଙ୍କର ଏକଚାଟିଆ ଅଧିକାର । ତାଙ୍କ ହାତରନ୍ଧା ଖାଦ୍ୟ ପରଷିଦେଲା ପରେ ଖାଲି 'ଭଲ ହେଇଚି' ଶବ୍ଦ ଦୁଇଟି ଶୁଣିଲା ପରେ ସେମାନେ କୃତକୃତ୍ୟ ହେଇ ପଡ଼ନ୍ତି । ଏକ ନାରୀ ସୁଲଭ ବିଶେଷ ଚରିତ୍ର । ଏଥିରେ ଆଉ ନୂଆ କଥା କଅଣ ଅଛି ? ତଥାପି କାହିଁକି କେଜାଣି ଗାରିମାର ହସଟା ତାଙ୍କୁ ଅନେକ ଭଲ ଲାଗିଲା ।

କିନ୍ତୁ ବନ୍ଧୁଗଣ ! ଲୋକଙ୍କ ଉଚ୍ଛଣ୍ଠାକୁ ଦ୍ୱିଗୁଣିତ କରିବାକୁ ବୋଧେ ସେ ଟିକିଏ ରହିଗଲେ ଏବଂ ତାପରେ ହସି ହସି କହିଲେ, ମୁଁ ଚା ପିଇଲାବେଳେ ଭାବୁଥିଲି ସବୁ ଫେଆରୱେଲ ମିଟିଂରେ ବୋଧେ ଚା ଏମିତି ତିଆରି ହେଉଥିବ । ତାପରେ ସେ ପୁଣିଥରେ ଟିକିଏ ରହିଗଲେ ଏବଂ କହିଲେ ଆହା, ମୁଁ ଯଦି ତାଙ୍କ ପରି ଏମିତି ମିଠା ଚା ଟିକିଏ ପିଇ ପାରୁ ଥାଆନ୍ତି । କିନ୍ତୁ ସେ ଭାଗ୍ୟ ମୋର କାହିଁ ?

ପ୍ରବଳ ହାସ୍ୟରୋଳ ସୃଷ୍ଟି ହେଲା ସଭାରେ । ବିନୟ ବାବୁ ଯେତେବେଳେ ଗର୍ବରେ ଫୁଲି ଉଠୁଥିଲେ ଯେତେବେଳେ ସେ ଦେଖିଲେ ସେଠି ସମସ୍ତେ ବିଶେଷ କରି ନାରୀମାନେ ତାଙ୍କୁ ବାରମ୍ବାର ଦେଖୁଚନ୍ତି ।

ବିନୟବାବୁ ସେ ଦିନ ଯେତେବେଳେ ଅଫିସରୁ ବାହାରିଲେ ସେତେବେଳେ ତାଙ୍କର ମନେହେଲା ସେ ଯେମିତି ଅନେକ ହାଲୁକା ହେଇ ଯାଇଛନ୍ତି । ଦୈନିକ ତାଙ୍କ ମୁଣ୍ଡ ଉପରେ ଯୋଉ ବୋଝଟିଏ ଥିଲା, ଅଫିସକୁ ଆସିଲାବେଳେ କିମ୍ବା ଅଫିସରୁ ଫେରିଲାବେଳେ ଯୋଉ ବୋଝଟା ତାଙ୍କ ମୁଣ୍ଡ ଉପରେ ଚାପି ହେଇ ବସୁଥିଲା ଏବଂ ତାଙ୍କୁ ବେଳେବେଳେ କଟକଟ ହେଇ ଯନ୍ତ୍ରଣା ଦେଉଥିଲା ସେଇଟା ଆଉ ତାଙ୍କ ଉପରେ ସବାର ହେଇ ନଥିବାର ଜଣା ପଡୁଥିଲା । ସେ ଏଣିକି ମୁକ୍ତ । ବହୁ ଯନ୍ତ୍ରଣା ଓ ଜଂଜାଳରୁ ସେ ଏବେ ଅନେକ ଦୂରରେ । କୌଣସି ପ୍ରକାର ବ୍ୟସ୍ତତାର ବନ୍ଧନ ତାଙ୍କୁ ଆଉ ବାନ୍ଧି ରଖିପାରିବ ନାହିଁ । ସେ ଭାବିଲେ ଏମିତି ବେପରୁଆ ତଥା ହାଲୁକାପଣ ସେ ଆଗରୁ କେବେ ଅନୁଭବ କରିନଥିଲେ । ଚାରି ପାଖ ଜଉମୁହ ଥିବା ଲଫାପା ଭିତରୁ ଚିଠିଟିଏ ବାହାରିଲା ପରି ସେ ଯେମିତି ଏବେ ଏବେ ନୂଆ କରି ଆକାଶ

ଦେଖୁଚନ୍ତି । ନୂଆ ପୃଥିବୀ ଦେଖୁଚନ୍ତି । ନୂଆ ମଣିଷମାନଙ୍କୁ ଦେଖୁଚନ୍ତି । ସେ ଏଣିକି ସମସ୍ତଙ୍କ ସହିତ ପ୍ରାଣଖୋଲା କଥାବାର୍ତ୍ତା କରିପାରିବେ । ଆଉ ତାଙ୍କୁ ବନ୍ଧୁବାନ୍ଧବମାନଙ୍କ ସାଥିରେ କଥା ହେଲାବେଳେ ସରକାର ନାମକ ଅଦେଖା ରାକ୍ଷସଟି ବିଷୟରେ ସଚେତନ ହେବାକୁ ପଡ଼ିବ ନାହିଁ କି କଥାବାର୍ତ୍ତାରେ ଭାଷାର ସଂଯମତା ପ୍ରତି ନଜର ଦେବାକୁ ହେବନାହିଁ । ସେ ଏଣିକି ସଂପୂର୍ଣ୍ଣ ମୁକ୍ତ ମଣିଷଟି ପରି ଶବ୍ଦମାନଙ୍କୁ ନେଇ ଖେଳି ପାରିବେ ଏବଂ ଖେଳରେ ବାଜି ମଧ ଲଗେଇ ପାରିବେ । ସେ ଏଣିକି ବାଛି ବାଛି ଭଲ ଶବ୍ଦମାନଙ୍କୁ ଭଲ ଲୋକଙ୍କୁ ଉପହାର ଦେଇପାରିବେ ଏବଂ ଅଳିଆ ଓ ଆବର୍ଜନାରେ ପଡ଼ିଥିବା ଶବ୍ଦମାନଙ୍କୁ ସାଉଁଟି ଆଣି ଖରାପ ଲୋକଙ୍କ ଉପରେ ଅଜାଡ଼ି ଦେଇପାରିବେ । ଚାକିରିରେ ଥିଲାବେଳେ ସେତକ ସେ କରିପାରୁନଥିଲେ । ଭଲ ଶବ୍ଦ ଉଭୟ ଭଲ ଓ ଖରାପ ଅଫିସରଙ୍କୁ ଜାଣି ଜାଣି ଦେବାକୁ ପଡୁଥିଲା । ଏଣିକି ଆଉ ସେ କଥା ହେବନାହିଁ । ଏଣିକି ଭୁଲଟାକୁ ଭୁଲ ଓ ଠିକଟାକୁ ଠିକ ବୋଲି ଅତି ଚଞ୍ଚଳ କହି ହେବ । ତାକୁ ଆଉ ବାଛିବାରେ ଅସୁବିଧା ହେବ ନାହିଁ ।

ଏ କଥା ଭାବିଲାବେଳେ ତାଙ୍କର ଅଫିସରେ ଥିବା କେଲେଣ୍ଡରରେ ବୁଦ୍ଧଙ୍କ କଥା ମନେପଡ଼ିଲା । କି ସୁନ୍ଦର, ଶାନ୍ତ ଓ ସୌମ୍ୟମୂର୍ତ୍ତି । ମିଛ, ମାୟା ଅନ୍ୟାୟ ଓ ଅତ୍ୟାଚାରରେ ଭର୍ତ୍ତି ପୃଥିବୀରେ ଭର୍ତ୍ତି ହେଇ ରହିଚି । ସେ ସେଥିରୁ ମୁକ୍ତ ହେବାପାଇଁ ଜୀବନଯାକ ତପସ୍ୟାରେ ବୁଡ଼ି ରହିଲେ । ସେ ତପସ୍ୟାର ଏଇ ନିଷ୍କର୍ଷ ଯେ- "ସତ୍ୟକୁ ସତ୍ୟ ଓ ମିଥ୍ୟାକୁ ମିଥ୍ୟା ହିସାବରେ ଜାଣିବା ଦରକାର ।" ବିନୟ ବାବୁ ଭାବିଲେ ଜୀବନଟା ଯାକ ସେ ଏଇ ସତ୍ୟଟାକୁ ଉପଲବ୍ଧି କରିପାରିଲେ ନାହିଁ । ମିଥ୍ୟାମାନେ ହିଁ ସବୁବେଳେ ଆସି ତାଙ୍କ ସାମନାରେ ନିଜର ବଡ଼ପଣ ଦେଖେଇ ଠିଆ ହୁଅନ୍ତି । ଏବଂ କି ଆଶ୍ଚର୍ଯ୍ୟ, ସେମାନେ କାୟାବିସ୍ତାର କରି ଠିଆ ହେଇଥିଲାବେଳେ ସତମାନେ କେତେ ନ୍ୟୁନ ଦେଖାଯାଆନ୍ତି ସତେ । ସେମାନେ ସେତେବେଳେ କେମିତି ଭୟରେ ଜଡ଼ସଡ଼ ହେଇ ଯାଆନ୍ତି । ଶାଗୁଣାଟି ମହୋଲ୍ଲାସରେ ଆକାଶରୁ ଉଡ଼ି ଆସି ମଡ଼ ପାଖରେ ବସି ତାକୁ ଦେଖୁଥିଲାବେଳେ ଶବର କାରୁଣ୍ୟ ଭରା ମାନସିକତା ପରି ସତ୍ୟର ଅବସ୍ଥା କେତେ ଦୟନୀୟ ?

ଆଜି ଏତେ ଦିନ ପରେ ବିନୟ ବାବୁ ମଣିଷ ଜୀବନର ଏଇ ଗୁଢ଼ ରହସ୍ୟଟି ବୁଝିପାରିଥିବାରୁ ତାଙ୍କ ଭିତରେ ଗୋଟାଏ ନୂଆ ଭାବାବେଗ ସୃଷ୍ଟି ହେଉଥିଲା । ତାଙ୍କ ଜୀବନର ଗୋଟାଏ ବିରାଟ ଅଂଶକୁ ସେ ଯେ ନଷ୍ଟ କରିଦେଇଚନ୍ତି ସେ କଥା ସେ ବୁଝିଲା ବେଳକୁ ତାଙ୍କର ଇଚ୍ଛା ହେଉଥିଲା ସେ ସେଇଠି ବସି ଟିକିଏ କାନ୍ଦନ୍ତେ କି ?

ଏଇ କଥା ଭାବିଲାବେଳକୁ ସେ ଦେଖିଲେ ତାଙ୍କ ଆଗରେ ଖଣ୍ଡେ ଚେଆର ପଡ଼ିଛି ଏବଂ ସେଥିରେ ସୁଜାତା ବସି ଖିଲ ଖିଲ ହସୁଛନ୍ତି ।

ଆରେ ଏଇଟା ତ ତାଙ୍କ ଘର । ସେ ତେବେ ଯା ଭିତରେ ଆସି ଘରେ ପହଞ୍ଚ ଗଲେଣି ?

"ତୁମେ ହସୁଚ ଯେ ?" ବିନୟ ବାବୁ ବାରଣ୍ଡା ଉପରେ ଠିଆ ହେଇଗଲେ ।

ମୁଁ ନ ହସି ଆଉ କଅଣ କରନ୍ତି ? ତୁମେ ଏଣିକି ଅଫିସ କାମରୁ ମୁକ୍ତ ହେଲ । ଆଉ ତୁମକୁ ଅଫିସ ଯିବାକୁ ପଡ଼ିବ ନାହିଁ । ଫାଇଲ ଧରି ଦୌଡ଼ିବାକୁ ହେବ ନାହିଁ । ଅଫିସ ଅପେକ୍ଷା ଅଫିସରଙ୍କ କଥା ବେଶି ଭାବିବାକୁ ହେବ ନାହିଁ । ଏଣିକି ତୁମେ ଘରର ଚାରି କାନ୍ଥ ଭିତରେ ଆବଦ୍ଧ ରହିବ । ମୋ କଥା ମାନି ଠିକ ସମୟରେ ହାଟକୁ ଥଳି ଧରି ଯାଇ ପରିବା ଆଣିବ । ନାତିକୁ ପାଠ ପଢେଇବ । ମୋତେ ନେଇ ଝିଅ ଘରକୁ ଯିବ । ମୋ ଆଣ୍ଠୁ ଗଣ୍ଠିର ଦରଜ ପାଇଁ କାଲୁ ପଡ଼ା ଘାଟ ସେକ କେନ୍ଦ୍ରକୁ ନେବ । ଏଥିରେ ମୁଁ ହସିବି ନାହିଁ ତ କିଏ ହସିବ । ସେ ବିନୟ ବାବୁଙ୍କ ବେକରୁ ଫୁଲମାଳ ବାହାର କରିନେଲେ ଏବଂ ପାଖ ଚୌକିରେ ଥୋଇ ଦେଲେ । ତାପରେ ସେ ସ୍ୱାମୀଙ୍କ ମୁହଁକୁ ଆଗରୁ କେବେ ଦେଖି ନଥିଲା ପରି ଅନେଇ ରହିଲେ ଏବଂ ତାପରେ କହିଲେ ତୁମେ କଅଣ ସତରେ ଷାଠିଏ ହେଇଗଲ ? କାହିଁ ସେମିତି କିଛି ତ ଜଣା ପଡୁନାହିଁ । ଆଜି ସକାଳେ ତୁମେ ଯେମିତି ଯାଇଥିଲ ସେମିତି ତ ଆସିଲ ।

ଚମକି ପଡ଼ିଲେ ବିନୟ ବାବୁ । ସୁଜାତା ତାଙ୍କୁ ଥଟ୍ଟା କରୁ ନାହାନ୍ତି ତ ?

ବିନୟ ବାବୁ ଭାବିଲେ ସେ ଆଜିଠାରୁ ଜଣେ ରେଜିଷ୍ଟର୍ଡ ବୃଦ୍ଧ । ସରକାରୀ ରେକର୍ଡ ଅନୁସାରେ ସେ ଆଜିଠାରୁ ଜଣେ ପେନସନ ଭୋଗୀ କର୍ମଚାରୀ । ଏବଂ ଏବେ ବରିଷ୍ଠ ନାଗରିକ ହିସାବରେ ପରିଗଣିତ ହେବେ । ସେଇ ହିସାବରେ ସେ ମଧ ସରକାରଙ୍କର ସବୁ ସୁବିଧା ସୁଯୋଗ ତାଙ୍କ ଦୟାରେ ତାଙ୍କୁ ମିଳିବ । ଜଣେ ଅଥର୍ବ ବୃଦ୍ଧ ହିସାବରେ ସେ ଆଉ ତାଙ୍କର ଅଧିକାର ଦାବୀ କରି ପାରିବେ ନାହିଁ । ସେ ହେବେ ଦୟାର ପାତ୍ର । ସରକାର ଯାହା ହାତ ଟେକି ଦୟାରେ ଦେବେ ତାକୁଇ ସେ ଗ୍ରହଣ କରିବାକୁ ବାଧ । ପେନସନଟା ଆଉ କଅଣ.... ? ଏ ସରକାର ତାକୁ ବରିଷ୍ଠ ନାଗରିକଙ୍କ ସାମାଜିକ ଅଧିକାର ବୋଲି ଗ୍ରହଣ କରେ ନାହିଁ ।

ବିନୟ ବାବୁଙ୍କ ଚିନ୍ତାରେ ସବୁ ଗୋଳମାଳ ହେଇ ଯାଉଥିଲା । ମାତ୍ର ଗୋଟାଏ ଦିନ ଭିତରେ ଯେ ତାଙ୍କ ଜୀବନରେ ଏତେ ପରିବର୍ତ୍ତନ ହେଇଯିବ ସେ କଥା ସେ କଳ୍ପନା ମଧ କରି ନଥିଲେ । ତାଙ୍କର ଛଅ ବର୍ଷର ନାତିଟିଏ ଅବଶ୍ୟ ଅଛି । କିନ୍ତୁ ସେ ତାଙ୍କୁ ପିଲା କାଳୁ ବାବା ବୋଲି ଡାକି ଆସୁଚି । ତାକୁ ପଚାରିଲେ 'ସେ ମୋ ବାବା' ଛଡ଼ା ଆଉ କିଛି କହିବ ନାହିଁ । ଏବେ ମଧ ବହୁ ଲୋକ ଜାଣି ନାହାନ୍ତି ବିନୟ ବାବୁଙ୍କର ନାତିଟିଏ ଅଛି ବୋଲି । ତାଙ୍କର ଯେ ଅବସର ନେବାର ସମୟ ହେଲାଣି ଏ କଥା ମଧ କେତେ ଜଣ ଜାଣନ୍ତି ? ବହୁ ଲୋକ ତ ଏ କଥା ବିଶ୍ୱାସ ମଧ କରନ୍ତି ନାହିଁ ।

ଆଉ ସୁଜାତା ଦେବୀ ? ତାଙ୍କୁ ଦେଖିଲେ ମଧ କିଏ କହିବ ଯେ ସେ ଜଣେ ରିଟାୟାର୍ଡ ଅଫିସରଙ୍କ ସ୍ତ୍ରୀ ? ଏବେବି ତ ସେ ଯେତେବେଳେ ବିନୟ ବାବୁଙ୍କ ସହିତ କୌଣସି ପାର୍ଟି ବା ଉତ୍ସବାନୁଷ୍ଠାନକୁ ଯାଆନ୍ତି ସେତେବେଳେ ଯୋଡ଼ିକୁ କେହି ପଚାଶ ଟପି ଥିବାର କହିବ ନାହିଁ । ସୁଜାତାଙ୍କର ସ୍ୱାଭାବିକ ସ୍ଲିମ ଦେହ, ଡକଡକ ଗୋରା ଓ ଲମ୍ବା ମୁହଁ । ସରୁ ନାକ, ଚିକ୍କଣ ଚିବୁକର ଭଙ୍ଗୀ । କ୍ଷୀଣ କଟି, ଯିଏ ଦେଖେ ସିଏ ଅନ୍ତତଃ କିଛି ସମୟ ଅନେଇ ରହେ । ଆଃ, କିଏ ଏମିତି ଗଢ଼ିଲା ମ ?

ସୁଜାତା ଓ ବିନୟ ଏବେ ଦୁହେଁ ମିଶି ମର୍ଣ୍ଣିଂ ୱାକରେ ଯାଆନ୍ତି । ଏକ ଦମ ଏକ ଘଣ୍ଟା ବଗିଚାରେ କାମ କରନ୍ତି । ସକାଳେ ଘଣ୍ଟାଏ ଓ ସଂଧ୍ୟାରେ ଘଣ୍ଟାଏ ଯାଇ ଷ୍ଟେଟ ଲାଇବ୍ରେରୀରେ ପଢ଼ାପଢ଼ି କରନ୍ତି । ତାପରେ ଅନ୍ୟାନ୍ୟ କାମ । ସେ ଏବେ ଗୋଟାଏ ଏନ୍‌ଜିଓରେ ଯୋଗ ଦେଇଛନ୍ତି ।

ଦୁହେଁ ସେ ଦିନ ହସି ହସି ବେଦମ୍ ହେଇଗଲେ । ଦୁହେଁ ଯାଉଥିଲେ ବାଲେଶ୍ୱର-ଶତାବ୍ଦୀ ଏକ୍ସପ୍ରେସରେ । ଗୋଟାଏ.ଏ.ସି. କମ୍ପାର୍ଟମେଣ୍ଟରେ ଦୁଇଟା ସିଟ ଅଧିକାର କରି ନେଇ ବସିଗଲା ପରେ ଟ୍ରେନ କଟକ ପାରି ହେଇଚି କି ନାହିଁ, ଆସି ପହଞ୍ଚିଗଲେ ଗୋଟାଏ ସରପ୍ରାଇଜଡ଼ ଚେକିଂ ଦଳ । ବିନୟ ବାବୁ ଦୁଇଟି ଟିକଟ ବଢ଼ାଇ ଦେଲେ । ସେମାନେ ଟିକଟ ଦେଖିଲେ ଏବଂ ପୁଣି ତାଙ୍କୁ ଦେଖିଲେ । ବାରମ୍ବାର ଦେଖିଲା ପରେ ବୟସ୍କ ଚେକିଂ ଷ୍ଟାଫ ଜଣକ କହିଲେ ଆପଣଙ୍କ ଆଇଡେଣ୍ଟିଟି କାର୍ଡ ?

ବିନୟ ବାବୁ ଦୁଇଟି କାର୍ଡ ପକେଟରୁ ବାହାର କରି ଦେଖେଇଲେ ।

ଟିକଟ ଏକଜାମିନର କାର୍ଡ ଓ ତାଙ୍କୁ ଦେଖିଲେ ଏବଂ ତାପରେ ସାମାନ୍ୟ ହସି କହିଲେ ଆପଣଙ୍କଠୁ ଶିଖିବାର କଥା ।

ବିନୟ ବାବୁ ଏଇ କଥାଟାକୁ ଏବେ ବଂଧୁ ମହଲରେ କେତେ ଥର କହିଚନ୍ତି । ଅନ୍ୟମାନେ ଯେ ଏଥିରେ ଆଶ୍ଚର୍ଯ୍ୟ ହୁଅନ୍ତି ତା ନୁହେଁ, କାରଣ ସେମାନେ ଜାଣନ୍ତି ବିନୟ ବାବୁ ବଞ୍ଚିବାର କଳାକୁ ଆୟତ୍ତ କରିଚନ୍ତି । ସେ କଳାଟି କୌଣସି ମଠ ମନ୍ଦିର ବା ସାଧୁ ସନ୍ନ୍ୟାସୀଠାରୁ ସେ ପାଇ ନାହାନ୍ତି । କୌଣସି ଯୋଗ ସାଧନା ସେ କରନ୍ତି ନାହିଁ । ଶରୀର ଓ ମନକୁ ଠିକ ରଖିବାକୁ ହେଲେ ସେ ଜାଣନ୍ତି ସତ୍ ଆଚରଣ ସହିତ ଖାଦ୍ୟର ସଂଯମତା ଓ ତା ସହିତ ଶାରୀରିକ ପରିଶ୍ରମ । ଶରୀରର ଯନ୍ତ୍ରଟିକୁ ଠିକ ରଖିବାକୁ ହେଲେ ମନଟିକୁ ମଧ ଠିକ ରଖିବାକୁ ହେବ- ଏ କଥାଟିକୁ ଭୁଲି ଗଲେ ଚଳିବ ନାହିଁ ।

ସେଦିନ ବିନୟ ବାବୁ ଘରକୁ ଫେରିଲା ମାତ୍ରେ ସୁଜାତା କହିଲେ ଗରିମା ତୁମକୁ ଫୋନ କରିଥିଲେ । ତାପରେ ସାମାନ୍ୟ ହସି ସେ କହିଲେ ସେ କଅଣ ତୁମକୁ ଏବେବି ଛାଡ଼ି ପାରୁନାହିଁ ?

ସେଥିପାଇଁ ତୁମର ଗର୍ବ କରିବାର କଥା । ବିନୟ ବାବୁ ଉତ୍ତର ଦେଲେ ।

ମାନେ ? ମୁଁ ତୁମର ବୟସଟାକୁ ଅଟକାଇ ରଖିପାରିଛି ବୋଲି ନା ଆଉ କଅଣ ? ତୁମର ସ୍ୱାସ୍ଥ୍ୟଟାକୁ ମୁଁ ଜଗିଚି ବୋଲି, ଏଇଆ କହୁଚ ?

"ଏଇ ସାମାନ୍ୟ କଥାଟାକୁ ଅବାଟରେ ନେବାର ସମୟ ଓ ମାନସିକତା ଆମର ଆଉ ନାହିଁ । ଗରିମା ମୋର ଜୁନିଅର କଲିଗ୍ । ସେ ମୋତେ ସମ୍ମାନ ଦେଉଥିଲା । ଚାକିରିରୁ ବିଦାୟ ନେଲି ବୋଲି ସେ କଅଣ ମୋତେ ସମ୍ମାନ ଦେବ ନାହିଁ ? କେବେ ସେ ଫୋନ କରିଥିଲା ? କାରଣ ପଚାରିଲନି ?"

''ସେ କଥା ମୁଁ ତାଙ୍କୁ କେମିତି ପଚାରିବି କହିଲ ? ତେବେ ମୁଁ ତାଙ୍କୁ ତମ ମୋବାଇଲ କଥା କହିଥିଲି । କିନ୍ତୁ ସେ ଆଗ୍ରହ ପ୍ରକାଶ ନକରିବାରୁ ମୁଁ ଆଉ ନମ୍ବର ଦେଲି ନାହିଁ । ସୁଜାତା ଚା ଓ ବିସ୍କୁଟ କିଛି ଆଣି ବିନୟ ବାବୁଙ୍କୁ ଦେଇ କହିଲେ ସେ ସାତ ଆଠ ଦିନ ପୂର୍ବରୁ ମଧ ଥରେ ଫୋନ କରିଥିଲେ । ମୁଁ ତାଙ୍କୁ କହିଥିଲି ସଂଧ୍ୟା ପରେ ହିଁ ସେ ଘରେ ମିଳିବେ । ମୁଁ ଅବଶ୍ୟ ତୁମକୁ କହିବାକୁ ଭୁଲି ଯାଇଥିଲି ।

ଗରିମା ଯା ଭିତରେ ଦୁଇଥର ଫୋନ କଲାଣି ? କଅଣ ଏମିତି କାରଣ ହେଇପାରେ ? ବିନୟ ବାବୁ ବେଡରୁମ ଭିତରକୁ ଯାଇ ଲୁଗାପଟା ବଦଳାଇଲେ । ଏବେ ତାଙ୍କର ଲାଇବ୍ରେରୀ ଯିବାର କଥା । ସେଇ ସମୟ ଭିତରେ ମଧ ଇଭନିଂ ୱାକ୍ କାମଟା ହେଇଯାଏ । ସୁଜାତା ଆସି ପଚାରିଲେ, ଏବେ ବାହାରିବ ନା ଡେରି କରିବ ?

''ନା ଆଉ ଦଶ ମିନିଟ । ମୁଁ ଲୁଗାଟା ବଦଳାଇ ଦିଏ ।''

ବିନୟ ବାବୁଙ୍କ ମନକୁ କିନ୍ତୁ ଗରିମା ସେତେବେଳଯାଏ ଆନ୍ଦୋଳିତ କରୁଥିଲା । କଅଣ ଏମିତି କାମ ପଡ଼ିଲା ଯେ ସେ ଦୁଇଥର ଫୋନ କରିସାରିଲାଣି ? ମୋବାଇଲ ନମ୍ବରଟାତ ମାଗି ପାରି ଥାଆନ୍ତା ? ହୁଏତ ସେ ଭାବିଥିବ ମୋବାଇଲ ନମ୍ବରଟା ମାଗିଲେ ସେ ନିଜେ ସନ୍ଦେହ ଘେରରେ ପଡ଼ିବ ନାହିଁକି ? ପୁରୁଷମାନେ ନିଜକୁ ଯେତେ ଚତୁର ଓ ସ୍ୱାଭିମାନୀ ମନେ କରୁଥିଲେ ମଧ ନାରୀମାନେ ଯେ ଏସବୁ କ୍ଷେତ୍ରରେ ଅନେକ ଆଗୁଆ ଏଥିରେ ସନ୍ଦେହ ନାହିଁ ।

ବିନୟ ବାବୁ ଦୁଇଟି ନାରୀଙ୍କୁ ଦେଖୁଥିଲେ । ଜଣେ ତାର ସ୍ୱାଭିମାନକୁ ରକ୍ଷା କରିବାକୁ ଯାଇ ଉପରେ ପଡ଼ି ମୋବାଇଲ ନମ୍ବର ମାଗି ନାହିଁ ଏବଂ ଆଉ ଜଣେ ନିଜର ସୁରକ୍ଷା ପାଇଁ ଉପରେ ପଡ଼ି ମୋବାଇଲ ନମ୍ବର ଦେଇ ନାହିଁ । ଏମାନେ ପରସ୍ପରକୁ ପ୍ରତିଯୋଗିତାର ଦୌଡ଼ ଭିତରେ ଛାଡ଼ି ଦେଇଚନ୍ତି ।

ତେବେ ବିନୟ ବାବୁ କିପରି ସେଥିରୁ ମୁକ୍ତି ପାଇବେ ?

ସେ ଯେତେବେଳେ ଗରିମାକୁ ଖୋଜୁଥିଲେ, ତାକୁ ଖାଲି ଟିକିଏ ଛୁଇଁବାକୁ ଇଛା କରୁଥିଲେ ସେତେବେଳେ ଗରିମା ଶରତ ଆକାଶର ନିର୍ମଳ ଚନ୍ଦ୍ର ପରି ଖାଲି ମୁହଁ ଦେଖେଇ ହସି ହସି ଦଉଡ଼ି ପଳାଉଥିଲା । ଆଉ ଆଜି ଯେତେବେଳେ ବିନୟ ବାବୁ ଭୂମଧ୍ୟସାଗରୀୟ ବାୟୁ ମଣ୍ଡଳରୁ ଯାଇ ହିମ ଶୀତଳ ମେରୁ ମଣ୍ଡଳର ଅପହଞ୍ଚ ଇଲାକାରେ ପହଞ୍ଚିଲେଣି ସେତେବେଳେ କେମିତି କେଜାଣି ଦୂର ଦିଗବଳୟରେ ଚନ୍ଦ୍ରର ଉଦ୍‌ଭାସ ତାଙ୍କୁ ବ୍ୟସ୍ତ ବିବ୍ରତ କରୁଚି । କି ମାନସିକତା ଇଏ ? ତାର ପଜେଟିଭ ଓ ନେଗେଟିଭ ଦିଗ କଥା ମନସ୍ତତ୍ତ୍ୱବିଦମାନେ କେବେ କୋଉଠି ଆଲୋଚନା କରିଛନ୍ତି କି ? ବିନୟ ବାବୁଙ୍କର ସବୁ ଯେମିତି ଗୋଳମାଳ ହେଇ ଯାଉଥିଲା । ସେ ଯେମିତି ଗୋଟାଏ କୋଠରିର ଦୁଆର ମୁହଁରେ ଠିଆ ହେଇଚନ୍ତି ।

ଭିତରକୁ ଯାଇ ପାରୁ ନାହାନ୍ତି କି ବାହାରକୁ କବାଟ ଆଉଜାଇ ନେଇ ପାରୁନାହାନ୍ତି । ହୃଦରେ ଉତାଳ ତିରଙ୍ଗ । ବିନୟ ବାବୁ ଆଶ୍ଚର୍ଯ୍ୟ ହେଇଯାଉଥିଲେ ।

କେତେ ହେବ ଗାରିମାର ବୟସ ? ଚାଳିଶ ଛୁଇଁଥାଇପାରେ । ପନ୍ଦର କୋଡିଏ ବର୍ଷର ଚାକିରିରେ ଆଉ କେତେ ହେବ ? ଗାରିମାର ସୁନ୍ଦର ଓ ସ୍ୱାସ୍ଥ୍ୟବାନ ସ୍ୱାମୀ ଓ ଗୋଟିଏ ଦଶ ବର୍ଷର ପୁଅ ମଧ ଅଛି । ତେବେ ଗାରିମା କଅଣ ଚାହୁଁଚି ? ଚାକିରି ବେଳର ଆନ୍ତରିକତାକୁ ସେ କଅଣ ଅତିକ୍ରମ କରିପାରୁନାହିଁ ? ତା ଭିତରେ କଅଣ ଗୋଟାଏ ଅଭାବବୋଧ ଏବେବି ତାକୁ ଘାଣ୍ଟି ଚକଟି ପକାଉଚି ? ଗୋଟାଏ ଅଜଣା ଅଭାବ କୁଆଡ଼େ ସବୁବେଳେ ମଣିଷକୁ ହନ୍ତସନ୍ତ କରୁଥାଏ । ତାକୁ ଦେଖି ହୁଏ ନାହିଁ କି ବୁଝି ହୁଏ ନାହିଁ । ତାକୁ ଛୁଇଁ ହୁଏ ନାହିଁ କି ଅନୁଭବ କରି ହୁଏ ନାହିଁ ।

ଆରେ ତମେ କଅଣ ଏଯାଏ କାମ ସାରିନାହଁ ? ଆଉ କେତେବେଳେ ସାରିବ ? ଆଜିକାଲି ତ ଲାଇବ୍ରେରୀ ନଅଟା ପୂର୍ବରୁ ବନ୍ଦ ହେଇଯାଉଚି ।

ନାଇଁ ମୁଁ ଭାବୁଚି ମୁଁ ଏବେ କୋଉ ପେଣ୍ଟ ସାର୍ଟ ହଳକ ପିନ୍ଧିବି ?

କାହିଁକି କାଲି ଯୋଉଟା ପିନ୍ଧିଥିଲ ? ତାକୁ ତ ତୁମେ କାଲି ବାହାର କରିଚ ।

"ଆରେ ସତେତ, ମୋର ମନେ ନଥିଲା । ବିନୟବାବୁ ଉଠିଲେ । ସେ ଯେ ଧରା ପଡ଼ିଯାଇଚନ୍ତି ଏ କଥାଟା ତାଙ୍କ ମନକୁ ଆସିବା ମାତ୍ରେ ସେ ନିଜକୁ ବଡ ସଂକୁଚିତ ମନେ କରୁଥିଲେ । ସେ ଦେଖିଲେ ସୁଜାତା ତାଙ୍କୁ ଦେଖୁଚନ୍ତି । ସେ ସଂଗେ ସଂଗେ ଆଖି ତଳକୁ କଲେ ଏବଂ ସାର୍ଟଟାକୁ ଗଳଉ ଗଳଉ କହିଲେ ଚାଲ- ଏଥର ଚାଲ । ଚାଲୁ ଚାଲୁ ତାଙ୍କର ମନେହେଲା କେହି ଜଣେ ଯେମିତି ତାଙ୍କୁ ପଛରୁ କହୁଚି, 'ବଞ୍ଚିଗଲୁ ରେ ପୁଅ ।'

ସତରେ ବିନୟ ବାବୁ ବଞ୍ଚିଗଲେ କି ? କାହିଁ ସେମିତି କିଛି ଜଣାପଡୁନି । ଏତେ ବାଟ ଆସିଲେଣି । ସୁଜାତା ତ କାହିଁ କିଛି କହୁ ନାହାନ୍ତି । ଆରେ, ଆଜି କଅଣ ସୁଜାତା ଚାଲିବାରେ ତାଙ୍କୁ ଟପି ଯାଉଚନ୍ତି ?

ପରଦିନ ଯେତେବେଳେ ବିନୟ ବାବୁ ଗାରିମା ଘରେ ପହଞ୍ଚିଲେ, ସେତେବେଳେ ସକାଳ ନଅଟା ମାତ୍ର । ରବିବାର ଛୁଟି ଦିନରେ ଗାରିମାର ସ୍ୱାମୀ ମାର୍କେଟ ଯାଇଥିଲେ ଏବଂ ପୁଅ କ୍ରିକେଟ ଖେଳିବାକୁ ଯାଇଥିଲା । ଗାରିମା ସେତେବେଳକୁ ଗାଧେଇ ସାରି ପ୍ରାୟ ପ୍ରସାଧନ ସାରି ଦେଇଥିଲେ । ହଠାତ୍ ଦୁହେଁ ଦୁହିଁଙ୍କୁ ଦୁଆର ମୁହଁରେ ଦେଖି ଏପରି ବିହ୍ୱଳିତ ହେଇଗଲେ ଯେ ଦୁହେଁ ଏକ ସମୟରେ ଅଜଣା ଶବ୍ଦଟିଏ ଉଚ୍ଚାରଣ କରି ବସିଲେ ଯାହାର କିଛି ମାନେ ନଥାଏ ।

ତୁମେ ଟେଲିଫୋନ କରିଥିଲା ଗାରିମା ?

ଥରେ ? କେତେଥର ।

ଗାରିମା କେତେଥର ଫୋନ କରିଚି ?

ବିନୟବାବୁ ଭାବିଲେ କହି ଦେବେ କି, ମୁଁ ଜାଣେ ନାହିଁ ? କିନ୍ତୁ ଏ କଥାଟା, ସୁଜାତାଙ୍କ ବିରୁଦ୍ଧରେ ଚାଲିଯିବ । ଏମିତି କଥାଟିଏ ଗାରିମାକୁ କହିଦେବା ଠିକ ହେବ ନାହିଁ । କିନ୍ତୁ ନିଜର ଛେପଟିକୁ ସେ କେମିତି ଢୋକିବେ ବୁଝି ପାରୁନ ଥିଲେ, ଯଦିଓ ସେ ସେତେବେଳେ କେବଳ ଛେପହିଁ ଢୋକି ଚାଲୁଥିଲେ ।

ମୁଁ ଆପଣଙ୍କୁ କେବେଠୁଁ ଖୋଜୁଚି । ଅନେକ ଥର ଟେଲିଫୋନ କରିବି ବୋଲି ଭାବି, ପରେ କରିପାରିନାହିଁ । ଜଂଜାଳ ଭିତରେ ଭୁଲି ଯାଇଚି । ଆପଣ ବି ତ କେବେ ମନେପକେଇ ନାହାନ୍ତି । ପୁରୁଣା ସାଙ୍ଗ ସାଥି ବଂଧୁମାନଙ୍କୁ କେମିତି ଭୁଲି ହୁଏ କେଜାଣି ? ଆପଣ ଆସିବା ପରେ ସେ ଅଫିସଟା ଗୋଟାଏ ଭୂତଖାନା ହେଇଯାଇଚି । ମୁଁ ତ ଟ୍ରାନ୍ସଫର ପାଇଁ ଦରଖାସ୍ତ ଦେଇ ଦେଇଚି ।

କଅଣ କହୁଚି ଗାରିମା ? ମୋ ପରେ ସେ ଅଫିସରେ ତାର ମନ ଲାଗୁ ନାହିଁ ? ସେ ଅନ୍ୟ ଅଫିସକୁ ଚାଲିଯିବ ? ତାଙ୍କ ପ୍ରତି ଗାରିମାର ଏତେ ଆନ୍ତରିକତା ଅଛି ବୋଲି ସେ ମୋଟେ ଜାଣିନଥିଲେ । ସେଇ ଆନ୍ତରିକତା କଅଣ ଗାରିମାକୁ ଏମିତି ଏକ ନିରୋଳା ମୁହୂର୍ତ୍ତରେ ବସି ଦି'ପଦ କଥା ହେବାକୁ ପ୍ରବର୍ତ୍ତାଇ ଥିଲା ? ସେ ଗାରିମାକୁ କଅଣ କହିବେ ଠିକ କରି ପାରୁନଥିଲେ ।

ମୁଁ ତ ଆପଣଙ୍କୁ କୌଣସି ପବ୍ଲିକ ଫଙ୍କସନରେ ମଧ ଦେଖୁନାହିଁ । ଆପଣତ ଆଗରୁ ପ୍ରାୟ ସବୁ ସାଂସ୍କୃତିକ କାର୍ଯ୍ୟକ୍ରମରେ ଯୋଗ ଦେଉଥିଲେ ।

ତୁମେ କଅଣ ସତରେ ମୋତେ ଏତେ ଖୋଜୁଥିଲ ?

ଗାରିମା ଝାଳେଇ ଗଲା ।

ବିନୟ ବାବୁ ନିଜେ ମଧ ଚମକି ପଡ଼ିଲେ । ଏମିତି ଗୋଟାଏ ବାକ୍ୟ ତାଙ୍କ ମୁହଁରୁ କେମିତି ଓ ଜାହିଁକି ବାହାରି ପଡ଼ିଲା ? ଗାରିମା ତାଙ୍କର ଅନେକ ଜୁନିଅର । ଏ ବାକ୍ୟଟି ଶୁଣିଲା ପରେ ସେ ସଚେତନ ହେବ ନାହିଁ ? ତାର ସରଳତା ଆଉ ହୁଏତ ରହିବ ନାହିଁ । ଶବ୍ଦ ଓ ବାକ୍ୟ ଉପରେ ଅଙ୍କୁଶ ନଥିଲେ ମଣିଷର ଘୋଡ଼ାକୁ ନିୟନ୍ତ୍ରଣ କରିହୁଏ ନାହିଁ । ପରିସ୍ଥିତିରୁ ରକ୍ଷା ପାଇବା ପାଇଁ "ସେ କହିଲେ, ମୁଁ ଆଜିକାଲି ବହୁତ ବ୍ୟସ୍ତ ରହୁଚି । ଗୋଟାଏ ଏନ.ଜି.ଓ.ରେ ଯୋଗ ଦେଲା ପରେ ମୋତେ ମୋଟେ ଆଉ ଫୁରୁସତ ମିଳୁନାହିଁ । କାମରେ ମଧ ଆନନ୍ଦ ମିଳୁଚି । ଗୋଟାଏ ସୋସିଓ ଇକୋନୋମିକ ପ୍ରୋଗ୍ରାମ ଉପରେ ରିସର୍ଚ୍ଚ କରିବା ଆମ କାମ । ମୁଁ ତାର ପ୍ରଶାସନିକ ଦାୟିତ୍ୱରେ ଅଛି ।

ଆରେ ଏଇଟାତ ବହୁତ ଭଲ କଥା । ବେଶ, ଆପଣ ବସନ୍ତୁ । ମୁଁ ଆପଣଙ୍କ ପାଇଁ ଚା ନେଇ ଆସୁଚି । ସେ ଉଠିଲା ଏବଂ କହିଲା ବିଜନ ନଆସିବା ଯାଏ ଆପଣ ଯାଇ ପାରିବେ

ନାହିଁ । ଘଣ୍ଟେ ଦି'ଘଣ୍ଟା ନ ଗପିଲେ ମନରେ ଶାନ୍ତି ଆସିବ ନାହିଁ । ଆପଣ କଅଣ ଆଉ ମିଳିବେ କି ? ସେ ଏକ ପ୍ରକାର ଦଉଡ଼ି ଯାଉଥିଲା ରୋଷେଇ ଘରକୁ ଏବଂ ପୁଣି ଫେରିଆସି ପଚାରିଲା ଚା'ରେ ଚିନି ଦେବି ? କିଛି ଉତ୍ତର ପାଇବା ପୂର୍ବରୁ ସେ କହିଲା, ଆଚ୍ଛା ମୁଁ ଅଲଗା କରି ଆଣୁଚି ।''

ବିନୟ ବାବୁଙ୍କର ଅହମିକାର ବଂଧ ଭାଙ୍ଗି ଖଣ୍ଡ ଖଣ୍ଡ ହେଇଗଲା । ସେ ଦେଖୁଥିଲେ ସୁନାମିର ଉତ୍ତାଳ ତରଙ୍ଗରେ ସେ ବଂଧର ଅଂଶଗୁଡ଼ାକ ସମୁଦ୍ର ଫେଣ ପରି ଛିନଛତ୍ର ହେଇ ଭାସି ଯାଉଥିଲେ ଦୂରକୁ, ଅନେକ ଦୂରକୁ ।



# ଛାୟାପଥ

ସୁନନ୍ଦା ଚୁପ୍‌ଚାପ୍ ବସିଥିଲା । ସେ ସେତେବେଳେ କୌଣସି କାମରେ ମନ ଲଗାଇ ପାରୁନଥିଲା । ସେ ପ୍ରଥମେ ଖଣ୍ଡେ ବହି ବୁକ୍‌ସେଲ୍‌ଫରୁ ଆଣି ପଢ଼ିବାକୁ ଚେଷ୍ଟା କଲା । ବହିଟା ଆଧାତ୍ମ୍ୟବାଦ ଉପରେ ଥିଲା । କିନ୍ତୁ କାହିଁକି କେଜାଣି ସେ ସେଥିରୁ କିଛି ବୁଝିପାରିଲା ନାହିଁ କି ଗୋଟାଏ ଦି'ଟା ପାରା ପଢ଼ି ଆଉ ବେଶୀ ପଢ଼ିପାରିଲା ନାହିଁ । ସୁନନ୍ଦାକୁ ଏସବୁ ବହି ପଢ଼ିବାକୁ ଭଲ ଲାଗୁଥିଲେ ମଧ ସେ ହୁଏତ ସେଥିରେ ମନ ଲଗାଇପାରୁ ନଥିଲା । ସେ ତା' ପରେ ଉଠି ଯାଇ ଲାଇଟ୍ ଲିଭାଇ ଦେଲା ଏବଂ ଚୁପ୍‌ଚାପ୍ ବିଛଣାରେ ଶୋଇପଡ଼ିଲା । କିଛି ସମୟ ଶୋଇଲା ପରେ ତାର ମନେହେଲା ଅଂଧାରଟା ବୋଧେ ତାକୁ ଚିନ୍ତା କରିବାରେ ବ୍ୟାଘାତ ସୃଷ୍ଟି କରୁଚି । ଅଂଧାରଟା ତାକୁ କେମିତି ରୁନ୍ଧି ପକାଉଥିଲା ପରି ଲାଗିଲା । ଏମିତି ସଂନ୍ଧ୍ୟା ସମୟରେ ଆଲୁଅ ନଜଳାଇ ଅନ୍ଧାର ସୃଷ୍ଟି କଲେ କେହି ହୁଏତ ଭିନ୍ନ ରକମର ଭାବିପାରେ । ଭାବିପାରେ ଯେ ହୁଏତ ମୋ ଦେହ ଖରାପ ଅଛି । କାହିଁକି ଆଲୁଅ ଜଳୁ ନାହିଁ ବୋଲି କେହି ପଚାରିବାକୁ ମଧ ଆସିଯାଇପାରନ୍ତି । ଶୈଳ, ସୁମିତ୍ରା ଓ ସୁମନାମାନେ ଏଇ ଅଳ୍ପ ଦୂରରେ ଦଶନମ୍ବର ଓ କୋଡ଼ିଏ ନମ୍ବର ରୁମ୍‌ରେ ରୁହନ୍ତି । ସୁମିତ୍ରାଟି ବଡ଼ ବିଚିତ୍ର ଝିଅଟି । ସେ ନଥିବା ଶବ୍ଦରୁ ଅର୍ଥ ବାହାର କରିଦିଏ । ସେ ଯଦି ଆସିଯାଏ ତା' ରୁମ୍‌କୁ ତେବେ ମୋଟେ ଘଟି ନଥିବା ଘଟଣାକୁ ଘଟେଇ ଦେବ । ସୁନନ୍ଦା ମୋଟେ ଚାହୁଁ ନଥିଲା ଏଇ ସମୟରେ ତା ରୁମ୍‌କୁ କେହି ଆସୁ । ସେ ବିଛଣାରୁ ଉଠି ପଡ଼ିଲା ଓ ପୁଣି ଲାଇଟ ଜଳେଇଲା ।

ସେ ଟିଭି ସାମ୍ନାରେ ବସିଲା । ରିମୋଟ୍‌ରେ ଗୋଟିକ ପରେ ଗୋଟିଏ ଚାନେଲ୍ ଲଗେଇ ଗଲା । କିନ୍ତୁ କୋଉଥିରେ ତା ମନଲାଗି ପ୍ରୋଗାମ୍‌ଟିଏ ଆସୁ ନଥିଲା । ନେସ୍‌ନାଲ୍ ନିଉଜ୍ ତାକୁ ବିରକ୍ତକର ଲାଗୁଥିଲା । ଏବେ ରାଜ୍ୟ ବିଧାନସଭା ବସିଚି । ତାର ପ୍ରସାରଣ ତାକୁ ଆହୁରି ବିରକ୍ତ କରୁଥିଲା । ବ୍ରେକିଂ ନିଉଜ୍ ଦେଖୁ ଦେଖୁ ତାର ନଜର ପଡ଼ିଲା ଗୋଟିଏ ନିଉଜ୍ ଉପରେ । ଏଇ ସମୟରେ ପର୍ଦ୍ଦାରେ ସେ ଗୋଟିଏ ସ୍କୁଲ ବସ୍‌ରୁ ଦଳେ ଛୋଟ ପିଲା ଓହ୍ଲାଉ ଥିବାର ଦେଖିଲା ।

ସେ ଚମକି ପଡ଼ିଲା । ରିତା ଭଳିଆ ପିଲା ମଧ ଏଥିରେ ଅଛନ୍ତି । ରିତା କଥା ତାର ମନେପଡ଼ନ୍ତେ ସେ ଭାବିଲା ସେ ଏବେ କଅଣ କରୁଥିବ ? ଏବେ ଏବେ ସେ ଖେଳ ସାରି

ହୁଏତ ଘରକୁ ଫେରିଥିବ । ତା ମାଆ ତାକୁ ହର୍ଲିକ୍ସ ଓ ବିସ୍କୁଟ୍ ଇତ୍ୟାଦି ଖାଇବାକୁ ଦେଉଥିବେ । କେଡ଼େ ଶାନ୍ତ ଓ ସୁଧାର ସେ ପିଲାଟି । ସକାଳର କାକରଧୂଆ ମୁହଁଟି ତାର ସବୁବେଳେ ଗୋଟାଏ ଫୁଟନ୍ତା ଫୁଲ ପରି । ତା ଆଖି ଦି'ଟା ସବୁବେଳେ ଢଳଢଳ । କେମିତି ଆସ୍ତେ ଆସ୍ତେ କଥା କୁହେ । ତା ପାଟିରୁ ଅଧା ଶବ୍ଦ ବାହାରେ ଆଉ ଅଧେ ବାହାରେ ନାହିଁ । ଗିଟାରର ପ୍ରଥମ ଟୁଂ ପରି ତାର ସ୍ୱର । ଏବେ ତା ମାଆ ତାକୁ ବିଭିନ୍ନ ଜିନିଷକୁ ଇଂରାଜୀରେ କଅଣ କୁହାଯାଏ, ସେ କଥା ତାକୁ କହୁଥିବେ ଓ ଜିନିଷ ସହିତ ପରିଚୟ କରାଇ ଦେଉଥିବେ । ସେ ତାକୁ ମନ ଦେଇ ଶୁଣି ମନେରଖିବାକୁ ଚେଷ୍ଟା କରୁଥିବ ନଚେତ୍ ତା ମାଆ କୋଳରେ ଲୋଟି ପଡୁଥିବ । ସେ ତା ମାଆକୁ ଶୋଇବା ପୂର୍ବରୁ ବୋକ ଦେଉଥିବ ? ଦେଉଥିବ ନିଶ୍ଚୟ । ତା ମାଆଠାରୁ ତ ସେ ନିଶ୍ଚୟ ବୋକ ଦେବା ଶିଖିଥିବ ।

ସୁନନ୍ଦା ଗୋଟାଏ କନ୍‌ଭେଣ୍ଟ ସ୍କୁଲରେ ଟିଚର ଅଛି । ଗତବର୍ଷ ସେ ବି.ଇ.ଡ଼ି. ପାଶ୍ କରି ଆସି ଏ ସ୍କୁଲରେ ଜଏନ୍ କରିଛି । ତା ଚାକିରି ବର୍ଷେ ପୂରିବ ଆଉ ମାସକ ପରେ । ସ୍କୁଲ ତରଫରୁ ତାକୁ ଘର ଦିଆଇଛି । ସ୍କୁଲର ବିଶାଳ ପରିସର ଭିତରେ ଗୋଟିଏ ପାଖକୁ ଟିଚର୍ସମାନଙ୍କର ବେଚଲାର ଏକୋମୋଡେସନ । ବେଶ୍ ସୁସଜ୍ଜିତ ସୁନ୍ଦର ସୁନ୍ଦର ରୁମ୍ । ଗୋଟିଏ ଖଟ । ଗୋଟିଏ ସୋଫା । ଗୋଟିଏ ପୋର୍ଟେବଲ୍ ରଙ୍ଗୀନ ଟିଭି ଓ ସାମାନ୍ୟ ବିଛଣାପତ୍ର । ମେସ୍‌ରୁ ସେ ଖାଏ । କିଛି ଅସୁବିଧା ନାହିଁ । ପଚାଶଟି ପିଲା ଥିବା ଗୋଟିଏ କ୍ଲାସ୍‌ର ସେ କ୍ଲାସ୍ ଟିଚର । ଏଇ ଅଧାଫୁଟା ଫୁଲମାନଙ୍କ ସହିତ ମିଶିବାକୁ ତାକୁ ବହୁତ ଭଲ ଲାଗେ ।

ଏଇ କେତେଦିନ ହେଲା କେମିତି କେଜାଣି ରିଚା ଆସି କ୍ଲାସ୍‌ରେ ତାକୁ ଫୁଲଟି ଦେଇ ଯେତେବେଳେ ପପି ଦିଏ ସେତେବେଳେ ସୁନନ୍ଦାର ଦେହଯାକ ଶିହରଣ ସୃଷ୍ଟି ହୁଏ । ପପିଟିରେ ବିଦ୍ୟୁତ୍ ତରଙ୍ଗ ସୃଷ୍ଟି ହୁଏ କି ? କାହିଁକି ଅନ୍ୟ ୪୯ଟି ପିଲା ମଧ ଆସି ବେଳେବେଳେ ପପି ଦିଅନ୍ତି । ସେମାନଙ୍କ ଓଠରେ ସେ ତରଙ୍ଗ ସୃଷ୍ଟି ହୁଏ ନାହିଁ । ତେବେ କଅଣ ରିଚାର ଓଠ ଏକ ବିଶେଷ ଉପାଦାନରେ ତିଆରି । ସୁନନ୍ଦା ହଠାତ୍ ଉଠିଗଲା ଡ୍ରେସିଂ ଟେବୁଲ୍ ପାଖକୁ । ଦର୍ପଣ ସାମ୍‌ନାରେ ଠିଆ ହୋଇ ସେ ଦେଖିଲା ତା' ମୁହଁକୁ । କିନ୍ତୁ କଅଣ, ଆଇନାରେ ତା' ମୁହଁ ପାଖରେ ରିଚାର ମୁହଁ କୋଉଠୁ ଆସିଲା ? ତା' ଓଠ ଆଗେଇ ଆସୁଚି ଯେ ? ସୁନନ୍ଦାକୁ ରିଚା ଦେଇଥିବା ଗୋଲାପର ପାଖୁଡ଼ା ପରି ତା' ଓଠ । ବେଶ୍ ଫୁଲ୍‌କା ଓ ମୋଟା । ରିଚା ବଡ଼ ହେଲେ ଗୋଟା, ସେକ୍ସି ଗାର୍ଲ ଭଳିଆ ଦେଖାଯିବ । ସୁନନ୍ଦା ହସିଦେଲା ।

ଆଜି ରିଚା ଦେଇଥିବା ଗୋଲାପ କଢ଼ଟା ଥୁଆ ହେଇଚି ବହି ଥାକର ଗୋଟାଏ କୋଣରେ । ତା' ପାଖରେ ଆଉ ଗୋଟାଏ । ତା' ପାଖରେ ଆଉ ଗୋଟାଏ । ସେଇଟା ହିଁ ପ୍ରଥମ ଗୋଲାପ ଯାହାକୁ ସେ ପ୍ରଥମ କରି ସୁନନ୍ଦାକୁ ଦେଇଥିଲା ଏବଂ କହିଥିଲା... ତା'ପରେ ଆଉ ସୁନନ୍ଦା ଭାବିପାରି ନଥିଲା ।

ଧେତ୍, ସୁନନ୍ଦା ଗୋଟେ ବାଜେ କଥା ଭାବୁଚି । ଏ ପ୍ରକାର କଥାରେ କିଛି ମାନେ ଥାଏ ? ତେବେ କାହିଁକି ରିଚା ପରି ଛୋଟ ପିଲାଟିଏ ତାକୁ ଏତେ ବ୍ୟସ୍ତ ବିବ୍ରତ କରୁଚି ? ତାର ପଦେ ମାତ୍ର କଥା ଆଜିକୁ ତିନିଦିନ ହେଲା ପ୍ରତି ମୁହୂର୍ତ୍ତରେ ତାକୁ ସାପଟିଏ ପରି ଚୋଟ ମାରୁଛି । ଏବଂ ସେଇ ସାପର ବିଷରେ ତାର ସମଗ୍ର ଦେହ ଜଳି ଉଠୁଚି । ତାର ସମସ୍ତ ଶିରାପ୍ରଶିରା ଯେମିତି ରଟ୍ ରଟ୍ କରି ଛିଣ୍ଡିଯିବାକୁ ବସିଚି । ରିଚା କଅଣ ବୁଝିପାରୁଚି ତାର ସେଇ ଗୋଟିଏ ବାକ୍ୟରେ ସୁନନ୍ଦା ଦେହରେ ସେ କେତେ ବିଷ ଛାଡ଼ି ଦେଉଚି ?

ସୁନନ୍ଦା ଉଠିଲା ଓ ଫ୍ରିଜ୍‌ରୁ ପାଣି ନେଇ ଢକଢକ କରି ପିଇଲା । ଛୋଟ ବୋତଲଟା ସେଇଠି ଶେଷ ହୋଇଗଲା । କେତେ ପାଣି ସେଥିରେ ଥିଲା କେଜାଣି । କିନ୍ତୁ ଖୁବ୍ ଥଣ୍ଡା ଥିଲା । ତଣ୍ଟିଠାରୁ ପେଟ ଯାଏ ବରଫର ଗୋଟାଏ ଛୋଟ ପାହାଡ଼ ସୃଷ୍ଟି ହେଲା ପରି ଲାଗିଲା ତାକୁ । କିନ୍ତୁ କାହିଁ ? ତଥାପି ତ ତାର ଜ୍ୱଳନ ମୋଟେ ଏତେ ଟିକିଏ ବି ପ୍ରଶମିତ ହେଲାନି । ସେ ଜ୍ୱଳନକୁ ଫ୍ରିଜ୍‌ର ଥଣ୍ଡା ପାଣି ଥଣ୍ଡା କରିପାରେ ନାହିଁ । ସେ ଶକ୍ତି ତାର ନାହିଁ। ପାଣିଟା ତ ପାଣି । ସେ ବିଷର ଜ୍ୱାଳାକୁ କେମିତି ଦୂର କରିପାରିବ ? ସେ ପ୍ଲାଷ୍ଟିକ୍ ବୋତଲଟାକୁ ଘରର କୋଣରେ ଥିବା ଗୋଟିଏ ମଇଳା ରଖାଯାଇଥିବା ପ୍ଲାଷ୍ଟିକ୍ ବାସ୍‌କେଟ୍‌ରେ ଫୋପାଡ଼ି ଦେଲା । ବାସ୍‌କେଟ୍‌ଟା ଖାଲି ଥିଲା । ଙ୍ଗ କରି ଶବ୍ଦ ହେଲା ପରେ ବୋତଲଟା ଦୁଇଥର ଏପଟ ସେପଟ ହୋଇ ନିଃଶବ୍ଦରେ ପଡ଼ି ରହିଲା । ସୁନନ୍ଦା କଅଣ ପାଇଁ କେଜାଣି ବୋତଲଟାକୁ ଦେଖିଲା । ଥରେ ନୁହେଁ ଦୁଇତିନିଥର । ତା'ପରେ କହିଲା ଆହା ବିଚାରି ବୋତଲଟା ! ଏବେ ଆଉ କୋଉ କାମରେ ଲାଗିବ ? ତୋ ଦ୍ୱାରା କାହାର କି ଉପକାର ହେବ ?

ସୁନନ୍ଦା ଯୋଉ ସ୍କୁଲରେ ଟିଚରସିପ୍ କରୁଚି ସେ ସ୍କୁଲ୍‌ଟା ଗୋଟେ ଖ୍ରୀଷ୍ଟାନ୍ ମିଶନାରୀର । ସାରା ଦେଶରେ ତାର ଶାଖା ଅନୁଷ୍ଠାନମାନ ଅଛି । ବେଶ୍ ଉଚ୍ଚ ଦରର ସ୍କୁଲ । ତାର ପ୍ରିନ୍‌ସିପାଲ୍ ଅବିବାହିତା । ସାରା ଜୀବନ ସେ ଅବିବାହିତା ରହିବେ ବୋଲି ଶପଥ ନେଇଚନ୍ତି । ସୁନ୍ଦର ଚେହେରା । ଗୋରା ତକତକ ଲମ୍ବା ଓ ପତଳା ଲମ୍ବା ମୁହଁ । ଇଂଲିଶ୍ ଷ୍ଟାଇଲରେ ବାଳ କାଟନ୍ତି ଓ ମୁଣ୍ଡ କୁଣ୍ଡାନ୍ତି । କିନ୍ତୁ ଖୁବ୍ ସାଧାସିଧା । ଯେକୌଣସି ପୁରୁଷଟିଏ ତାଙ୍କୁ ଦେଖିଲା ମାତ୍ରେ ପ୍ରେମରେ ନ ହେଲେ ମଧ ଲୋଭରେ ପଡ଼ିଯିବ । ପଚାଶ ଟପିଲାଣି । ଯେ ବି କହିବ ସେ ତିରିଶ ଛୁଇଁ ନଥିବେ । ସିଧା କଥାରେ ଗୋଟେ ଆକର୍ଷଣୀୟ ଚେହେରା ।

ସୁନନ୍ଦା ଯୋଉଦିନ ପ୍ରଥମ କରି ଚାକିରିରେ ଜଏନ୍ କଲା ସେଦିନ ସନ୍ଧ୍ୟାରେ ସେ ତା ନିଜ ରୁମ୍‌ରେ ଗୋଟିଏ ଚା' ଭୋଜିର ଆୟୋଜନ କରିଥିଲା । ଦଶ ବାରଜଣ ଟିଚର ଥିଲେ । ଉପଦେଶ ଛଳରେ କହିଥିଲେ ପ୍ରିନ୍‌ସିପାଲ, ସୁନନ୍ଦା ! ତୁମେ ଜୀବନର ପ୍ରଥମ ପାହାଚରେ ପାଦ ଦେଇଚ । ବୁଝିପାରୁଚ ତ ତୁମ ରାସ୍ତାଟା କେତେ ଲମ୍ବା । ଜାଣ ତ ତୁମ ରାସ୍ତା କେତେ ପିଚ୍ଛିଳ । କଣ୍ଟା ବି ତ କମ୍ ନାହିଁ । ତାକୁ ଆଡ଼େଇ ଆଗକୁ ଯାଇପାରିବ ତ ? ଝୁଣ୍ଟି ପଡ଼ିବ ନାହିଁ ? ବାଟ ଭୁଲିବ ନାହିଁ ? ତୁମ ମୁଣ୍ଡରେ ଯୋଉ ବିରାଟ ବୋଝଟାଏ ଅଛି

ତାକୁ ମୁଣ୍ଡେଇ ଚାଲିପାରିବ ତ ? ସେ ବୋଝ ତମ ନିଜର । ତମର କଞ୍ଚା ବୟସର ରୂପ ଓ ଯୌବନର ଓଜନ କମ୍ ନୁହେଁ । ତାକୁ ନେଇ ସାରା ଜୀବନ ଚାଲିବା କମ୍ କଷ୍ଟ ନୁହେଁ । ତୁମର ଯଦି କେତେବେଳେ ଗୋଡ଼ ଖସିଯାଏ,ଚହଲିଯାଏ ଦେହ ଓ ମୁଣ୍ଡ, ତେବେ ସେଇ ବୋଝଟା ହିଁ ତାର କାରଣ ।

ମନେରଖିବ ସେବା ହିଁ ତମର ଧର୍ମ ଓ କର୍ମ । ଶପଥ ନେଇଚ, ଆଜୀବନ ତୁମେ ସେଇ ସେବାହିଁ କରିଚାଲିବ । ନିଃସ୍ୱାର୍ଥ ସେବା । ପାଇବାର ଆଶା ନାହିଁ । ଦେବାର ଜୀବନ । ଉତ୍ସର୍ଗୀକୃତ ଜୀବନ । ଏଇ ନିଅ । ସେ ଜଳୁଥିବା ମୋଟା ମହମବତୀଟାକୁ ତାକୁ ଧରାଇ ଦେଇଥିଲେ ଏବଂ ମସ୍ତକରେ ଚୁମ୍ବନଟିଏ ଦେଇଥିଲେ ।

ଏଥର ଦେଖ ସେ ଜ୍ୱଳନ୍ତ ଶିଖାକୁ- । ସେ ଜଳୁଚି ଓ ଜଳିବ । ଜଳିବା ହିଁ ତାର ଧର୍ମ । ଆଲୋକ ପ୍ରଦାନ ହିଁ ତାର କାମ । ଅନ୍ଧାରକୁ ଦୂର କରି ସେ ପୃଥିବୀକୁ ଆଲୋକିତ କରେ । ମଣିଷକୁ । ମଣିଷର ମନକୁ । ମଣିଷର ହୃଦୟକୁ । ଏ ଆଲୋକକୁ ତୁମେ କେବେ ଲିଭିବାକୁ ଦେବ ନାହିଁ ତ ? ମନେରଖିବ ଆଲୋକ ଜଳେ ଓ ଜଳାଏ ।

ସୁନନ୍ଦାର ମନେଅଛି ସେଦିନର କଥା । କିନ୍ତୁ ପ୍ରିନ୍ସିପାଲଙ୍କ ସେଦିନର ଓଠର ଚୁମ୍ବନ ଆଉ ରିଚାର ଓଠର ଚୁମ୍ବନ ଭିତରେ ଏତେ ପାର୍ଥକ୍ୟ କାହିଁକି ? ସଜ୍ଞାନ ଓ ଅଜ୍ଞାନର ଚୁମ୍ବନ କଅଣ ଅଲଗା ଥାଏ କି ? ରିଚାର ସେଇ କେତୋଟି ଶବ୍ଦ ଯଦି ତା ଓଠରୁ ପ୍ରଥମେ ଉଚ୍ଚାରିତ ହୋଇ ନଥାଆନ୍ତା ତେବେ ତାର ଓଠର ଚୁମ୍ବନ ପ୍ରିନ୍ସିପାଲ୍‌ଙ୍କ ଓଠରେ ମିଶିଯାଇଥାଆନ୍ତା କି ? ଆଉ ସେଇ କେତୋଟି ଶବ୍ଦ ଭିତରେ ଏମିତି କି ମନ୍ତ୍ରଶକ୍ତି ଅଛି କେଜାଣି ତାର ପ୍ରତିକ୍ରିୟା ଆଉ ଏକ ପ୍ରଚଣ୍ଡ ବିସ୍ଫୋରଣ ସୃଷ୍ଟି କରୁଚି । ନିଃଶବ୍ଦ, ପୁଣି ଏତେ ଶକ୍ତି ?

ସୁନନ୍ଦା ବିଛଣାରୁ ଉଠି ବସିଲା । ଯା ଭିତରେ ଯେ ପାଓ୍ୱାର ଫେଲ୍ୟୋର ଯୋଗୁଁ ସମଗ୍ର ରୁମ୍‌ଟା ଅନ୍ଧାର ହୋଇଯାଇଚି ସେ କଥା ତାର ମନେ ନଥିଲା । ସେ କାନ୍ଥକୁ ଅନେଇଲା । ଅତି ଦୟନୀୟ ଓ ଅସହାୟ ଭାବରେ ବେକ ଭାଙ୍ଗି ଝୁଲି ପଡ଼ିଥିବା ଗୋଟାଏ ମୂର୍ତ୍ତି ପାଖରେ ମହମବତୀଟି ତଥାପି ଜଳୁଥିଲା । ସୁନନ୍ଦା ସେ ବତୀ ସାମ୍ନାରେ ସିଧା ହୋଇ ଠିଆ ହେଲା । ମୂର୍ତ୍ତିକୁ ଅପଲକ ଆଖିରେ ଦେଖିଲା ଏବଂ ତା'ପରେ କହିଲା- ହେ ମହାତ୍ମା ! ତୁମେ ତୁମର ସମସ୍ତ ଦୁଃଖ ଓ ଯନ୍ତ୍ରଣା ମୋତେ ଦେଇଦିଅ ଓ ତା' ବଦଳରେ ମୋ ଭିତରେ ଥିବା ସାମାନ୍ୟ ଦୁଃଖକୁ ନେଇଯାଅ । ପାରିବ ଏତକ କରି ? ଏଇ ସାମାନ୍ୟ କାମ ?

ମୂର୍ତ୍ତି କହିଲା, "ନା ତା କିପରି ସମ୍ଭବ ? ପ୍ରତ୍ୟେକଙ୍କ ଦୁଃଖ ସ୍ୱତନ୍ତ୍ର । ସେଥିରେ ଅଦଳବଦଳର ପ୍ରଶ୍ନ ଉଠେନା । ନିଜର ଦୁଃଖକୁ ନିଜର ସାଥି ହିସାବରେ ଗ୍ରହଣ କରିବାକୁ ହେବ । ସେ ଚିରନ୍ତନ ସାଥିହିରୁ ଅଲଗା ହୋଇ ହୁଏ ନାହିଁ । ମଣିଷର ପ୍ରଥମ କ୍ରନ୍ଦନ ସହିତ ସେ ପୃଥିବୀକୁ ଆସେ ଏବଂ ଶେଷ କ୍ରନ୍ଦନ ସହିତ ସେ ଯାଏ । ଦୁଃଖକୁ ଅଲଗା କରିହୁଏ ନାହିଁ

କି ଅନ୍ୟକୁ ଦେଇହୁଏ ନାହିଁ ।'' କୋଠରି ଭିତରେ ଆଲୋକ ଜଳି ଉଠିଲା । ସୁନନ୍ଦା ଆତ୍ମସ୍ଥ ହେଲା । ସେ ଦେଖିଲା ସେ ଆଇନା ସାମ୍ନାରେ ଠିଆ ହେଇଚି । ତାର ସଂପୂର୍ଣ୍ଣ ଅବୟବ ଦେଖାଯାଉଚି । ସେ ଦେଖିଲା କାହିଁ ଏଥିରେ ସେମିତି ଦୁଃଖର ଛାପ ତ ଦେଖାଯାଉନି । ତେବେ ତାର ଦୁଃଖ କେଉଁଠି ଲୁଚିଛପି ରହିଚି ? ସେ ଯନ୍ତ୍ରଣା- ଦୁଃଖର ବାଘବୁଆ ଯିଏ ତାକୁ ବାରମ୍ବାର ଡରାଉଚି, ଭୟ ଦେଖାଉଚି ?

ସେ କେତେଥର ଭାବିଚି ରିତାକୁ ପଚାରିବ ସେ ଫୁଲ କଥା । କିମ୍ବା ଅନ୍ତତଃ ସେ ପଚାରିବ ସେ କାହିଁକି କହୁଚି ସେ କଥା । ସେଇ ଗୋଟିଏ କଥା । ଦ୍ୱିତୀୟ କଥା ନାହିଁ । ତାକୁ କେହି କହିଚିକି ସେ କଥା କହିବାପାଇଁ ? କିନ୍ତୁ ସେ କଥା ସେ ପଚାରିପାରେ ନାହିଁ । ଭାବି ଭାବି ପଚାରିବାକୁ ଗଲାବେଳକୁ ତା ତଣ୍ଟି ଶୁଖିଯାଏ । ଶବ୍ଦମାନେ ଛନ୍ଦି ହେଇପଡ଼ନ୍ତି । କଥା ଆଉ ବାହାରେ ନାହିଁ । ସେ ରିତାକୁ ଦେଖେ, ତାକୁ ଗେଲ କରେ । ତାପରେ ରିତା ବସ୍ ପାଖକୁ ଚାଲିଯାଏ । ଗଲାବେଳେ ସେ ବାରମ୍ବାର ପଛକୁ ଦେଖେ ଓ ହାତ ହଲେଇ ବାୟ୍ ବାୟ୍ କରେ । ତାର ସେଇ ବାୟ୍ ବାୟ୍ ଭିତରେ ଅନେକ କଥା ଲୁଚି ରହିଚି ଯେମିତି । ଅନେକ ସମୟରେ ସୁନନ୍ଦା ଭାବେ ସେ ଫୁଲଟା ଗୋଟାଏ ସାଂକେତିକ ଶବ୍ଦ କି ? ସେ ସାଂକେତିକତାକୁ କେମିତି ଫିଟେଇ ହେବ ? 'ଫୁଲ' ଓ 'ତାଡି ଦେଇଛନ୍ତି' ଭିତରେ ଥିବା ବହୁ ସାଂକେତିକ ସ୍ୱର ଓ ଶବ୍ଦସବୁକୁ ଫିଟେଇବାକୁ ହେଲେ ଯୋଉ ସିକ୍ରେଟ୍ କୋଡ଼ ଅଛି ତାକୁ ସୁନନ୍ଦା ଜାଣିପାରୁନାହିଁ । ପୁଣି ସୁନନ୍ଦା ଭାବିଲା ଏମିତି ଗୋଟାଏ ସିକ୍ରେଟ୍ କୋର୍ଡକୁ ଫିଟେଇ ସେ କଅଣ କରିବ ? ପାଣ୍ଡୋରାର ବାକ୍ସ ପରି ତା ଭିତରୁ ଯାହା ବାହାରିବ ତାକୁ ସୁନନ୍ଦା ସମ୍ଭାଳି ପାରିବ ତ ? ତାକୁ ସେ ପାଖରେ ରଖିପାରିବ ? ଥରେ ଆସିଗଲେ ତାକୁ ସେ ପାଳିପୋଷି ପାରିବ ? ଆଉ ସେଇଟା ଯଦି ନ ହୁଏ ? ମଂଜି ଭିତରୁ ଗଜା ବାହାରିବା ଏକ ସତ୍ୟ । ସେ ସତ୍ୟ ଅଂକୁରରୁ ବଢ଼ି ବଢ଼ି ଶେଷରେ ଡାଳପତ୍ର ମେଲେ । ଫୁଲ ହୁଏ । ଫଳ ବି ହୁଏ । ତାହାହିଁ ଗଛର ପରିଣତି । ସୁନନ୍ଦା ସେ ଗଛକୁ ନେଇ କଅଣ କରିବ ? ଫୁଲ ଓ ଫଳ ତାର ଆବଶ୍ୟକ ନାହିଁ । ନା, ଶେଷରେ ସେ ସ୍ଥିର କଲା, ସେ ତାକୁ ବଢ଼ିବାକୁ ଦେବନି । ସେ ମଂଜି ପୋତିବନି କି ସେଥିରେ ପାଣି ଢାଳିବନି ।

ମଂଜି କିନ୍ତୁ ଦିନେ ନା ଦିନେ ଗଜା ହୁଏ । ସେ ଅନ୍ୟର ଯତ୍ନକୁ ଅପେକ୍ଷା କରେନା । ବରଂ ଆକାଶରୁ ଯତ୍ନକୁ ଟାଣିଆଣେ । ନିଜ ଦେହରେ ସିଞ୍ଚି ଦିଏ । ଏବଂ ତା'ପରେ ସେ ଖୋଳପା ଭିତରୁ ମୁଣ୍ଡ ଟେକେ ଖୁବ୍ ଧୀରେ । ବାସ୍ ତା'ପରେ ତାକୁ ଆଉ କେହି ଅଟକାଇ ପାରେନା । ସେ ଉଠେ । ଉପରକୁ ଉଠେ । ପତ୍ରଟିଏ ଦେଖାଦିଏ ।

ସେଦିନ ଚମକି ପଡ଼ିଲା ସୁନନ୍ଦା । ଇଏ କଅଣ ? ଏ ମଂଜି ଆସିଲାକୋଉଠୁ ? ପୋତିଲା କିଏ ? କେବେ ପୋତା ହେଲା ? କାଲି, ପଅରଦିନ ? ନା ତା ଆଗରୁ ? ତାର ଅଜାଣତରେ ଏତେ କଥା ହେଇଗଲା ଅଥଚ ସେ କିଛି ଜାଣିପାରିଲା ନାହିଁ । ସଂପୂର୍ଣ୍ଣ

ଅଜ୍ଞାତସାରରେ ଏତେ ବଡ଼ ଦୁଃସାହାସ କାହାର ହେଲା ଯେ ସେ ଲୁଚି ଲୁଚି ଆସି ଏତେ ବଡ଼ କାମ କରିଦେଇଗଲା ?

ସେଦିନ ରାତିରେ ସୁନନ୍ଦା ମୋଟେ ଶୋଇପାରିଲାନି । ତା ଆଖି ଆଗରେ ସବୁବେଳେ ଦୁଇଟା କଅଁଳ ପତ୍ର ଦେଖାଗଲା । ଶ୍ୟାମଳ ପତ୍ର ଦୁଇଟା ଉପରକୁ ଅନେଇ ହସୁଚନ୍ତି । କିଛି କହିବେ କହିବେ ହଉଚନ୍ତି । ଅଥଚ କହିପାରୁନାହାନ୍ତି । ସେମାନଙ୍କ ଭିତରେ ଲୁଚିରହିଚି କଥା ସବୁ ।

ସୁନନ୍ଦା ପଚାରିଲା, ତୁମେ ସବୁ ମୋତେ କିଛି କହିବ ? କୁହ । ଶୀଘ୍ର କୁହ । ମୋର ସମୟ ନାହିଁ । ମୁଁ ଅପେକ୍ଷା କରିପାରିବି ନାହିଁ । ଡେରି କଲେ... ।

କହିବାର କିଛି ନାହିଁ । ତୁମେ ଆମକୁ ଡାକିଲ । ଆମେ ଆସିଲୁଁ । ଏଣିକି ତୁମେ କୁହ । ଆମେ କଅଣ କରିବୁଁ । ଯାହା କହିବ, ଆମେ ସେଇଆ କରିବୁଁ ।

କଅଣ କହିଲ ମୁଁ ତୁମକୁ ଡାକିଥିଲି ? କିଏ କହିଲା ? ତମଠି ମୋର କଅଣ କାମ ଯେ ? ତୁମ ସହିତ ମୋର ସଂପର୍କ ? ନା ତୁମେ ମିଛ କହୁଚ । ମୋ ନାଁରେ ଅପବାଦ ଲେପିବାକୁ ଚାହୁଁଚ ? ମୁଁ ତୁମକୁ ଡାକି ନାହିଁ । ଡାକିପାରେନା । ତୁମେ ମନକୁ ମନ ଆସିଚ ।

ପାଖୁଡ଼ା ଦି'ଟା ହସିଲେ । ଗୋଟେ କଅଁଳ ଶିଶୁର ହସ । ଯେତେ ଦୁର୍ବୋଧ ହେଲେ ମଧ ଖୁବ୍ ମନ ମତାଣିଆ । ସେମାନେ କହିଲେ- ଠିକ୍ ଅଛି, ତୁମେ ଯଦି ଆମକୁ ଡାକିନାହଁ, ଆମକୁ ତଡ଼ି ଦିଅ । ପାରିବ ତଡ଼ି ଆମକୁ ?

ସୁନନ୍ଦା ଚିଠି ଲେଖିଲା । ଜୀବନର ପ୍ରଥମ ଚିଠି । ସେ ସେଥିରେ ଲେଖିଲା, ନା, ଆପଣ ଏମିତି ବାରମ୍ବାର ଚିଠି ଲେଖନ୍ତୁ ନାହିଁ । ମୋର ହାଡ଼ ରକ୍ତମାଂସକୁ ଦୁର୍ବଳ କରିଦିଅନ୍ତୁ ନାହିଁ । ମୋର ଅସ୍ଥି ମଜ୍ଜା ସବୁକୁ ଶିଥିଳ କରିଦିଅନ୍ତୁ ନାହିଁ । ମୁଁ ମୋର ସାଧନାର ପଥରୁ ଦୁରେଇ ଯିବାକୁ ଚାହୁଁ ନାହିଁ । ମୋତେ ଦୟାକରି ସାହାଯ୍ୟ କରନ୍ତୁ । ମନେରଖନ୍ତୁ । ଯାପରେ ମୁଁ ଆଉ ଚିଠି ଦେବିନି କି ମୋବାଇଲ୍ ମଧ ଧରିବି ନାହିଁ । ଆବଶ୍ୟକ ହେଲେ ମୁଁ ମୋର ମୋବାଇଲ ନମ୍ବର ବଦଳ କରିଦେବି ।

ସୁନନ୍ଦା ଠିଆହେଲା ମୂର୍ତ୍ତି ସାମ୍ନାରେ । ମହମବତୀ ଜଳୁଚି ଅବାରିତ ଭାବରେ । ତାର ଶିଖା ଉପରକୁ ଉଠୁଚି । ସେ ହୁଏତ ଯେତେ ଉପରକୁ ଉଠିବାକୁ ଚେଷ୍ଟା କରୁଚି ସେତକ ପାରୁ ନାହିଁ । କିନ୍ତୁ ତାର ଉପରକୁ ଉଠିବାର ଚେଷ୍ଟାରେ ବିରାମ ନାହିଁ । ବାରମ୍ବାର ଉଠୁଚି ଓ ପୁଣି ଖସି ପଡୁଚି । ଉପରକୁ ଉଠିବା ହିଁ ତାର ଧର୍ମ ।

ଆଉ ଏ ଅଙ୍କୁରଟା ? ସେ ମଧ ଉପରକୁ ଉଠୁଚି । ସେ ଉପରକୁ ଉଠେ । ବଡ଼ ହୁଏ । ବଡ଼ରୁ ବଡ଼ ହୁଏ । ଆହୁରି ବଡ଼ । କାୟା ବିସ୍ତାର କରେ । ବିସ୍ତାରିତ କାୟା ଯେତେବେଳେ

ଠିଆ ହୁଏ ସେତେବେଳେ ତାର ଛାୟା ତଳେ ଜଣେ ଆଶ୍ରୟ ଲୋଡ଼େ କି ? ତାକୁ ଆଶ୍ରୟ ବୋଲି କୁହାଯିବ ନା ଆଉ କିଛି ?

ସୁନନ୍ଦା ଉତ୍ତର ଦେଲା- ନା ତାକୁ ଆଶ୍ରୟ ବୋଲି କୁହାଯାଇପାରିବନି । ଆଶ୍ରୟ ଏକ ଭିନ୍ନ ଶବ୍ଦ । ଆନୁଗତ୍ୟର ପାଖାପାଖି । ସମର୍ପଣ ସହିତ ସମାନ । ତାର ଅନ୍ୟନାମ ପରାଧୀନତା । ସୁନନ୍ଦା କହିଲା- ମୁଁ ସେସବୁ କିଛି ଜାଣେ ନାହିଁ । ଆନୁଗତ୍ୟ, ସମର୍ପଣ ଓ ଆଶ୍ରୟ ପ୍ରଭୃତି ଶବ୍ଦସବୁ ମୋ ଭିତରର ଦୁର୍ବଳତାର ପତ୍ର ଓ ଫୁଲ । ମୁଁ ସେସବୁକୁ ମୋଟେ ପ୍ରଶ୍ରୟ ଦେବାକୁ ଚାହୁଁ ନାହିଁ । ମୁଁ ସେମାନଙ୍କ ଅସ୍ତିତ୍ୱକୁ ମଧ୍ୟ ଅସ୍ୱୀକାର କରୁଚି । ମୁଁ ସେମାନଙ୍କୁ ଜାଣେ ନାହିଁ । ମୋର ଗତିପଥ ଅଲଗା । ମୁଁ ମୋର ସେ ରାସ୍ତାରେ ସେମାନଙ୍କୁ ଭେଟିବାକୁ ଚାହେଁ ନାହିଁ । ମୋର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସବୁକୁ ସେମାନେ ପଣ୍ଡ କରିଦେବେ ।

ସେ ହାତ ଯୋଡ଼ିଲା । ଆଖି ବୁଜିଲା । ପ୍ରାର୍ଥନା କଲା । କହିଲା- ମୋତେ ଶକ୍ତି ଦିଅ ପ୍ରଭୋ ! ମୁଁ କାହାରି ଶରଣ ପଶିବାକୁ ଚାହେଁ ନାହିଁ । ମୁଁ ସ୍ୱାଧୀନ ରହିବାକୁ ଚାହେଁ । ଶକ୍ତିର ସ୍ୱାଧୀନତା । ମୁଁ ମଣିଷ । ମୋ ଭିତରେ ଏତେ ଦୁର୍ବଳତା କାହିଁକି ?

ସୁନନ୍ଦା ସେଦିନ ଚଟାପଟ୍ ପ୍ରାର୍ଥନା ଶେଷ କଲା ଏବଂ ଠିକ୍ କଲା ସେ ଆଉ ଗୀତାଠୁ ଫୁଲ ଗ୍ରହଣ କରିବ ନାହିଁ । ସେ କାହାରିଠୁ ଫୁଲ ନେବ ନାହିଁ । ସମସ୍ତଙ୍କୁ ମନା କରିଦେବ । କହିବ, ଫୁଲକୁ ଗଛରେ ରହିବାକୁ ଦିଅ । ସେ ସେଇଠି ଥାଉ । ସେ ସେଇଠି ବେଶୀ ସୁନ୍ଦର ଦେଖାଯିବ । ଏ ଫୁଲଟି ହିଁ ତାର ଦୁର୍ବଳତାର ବାହକ । ସେ ତାର ଆସିବାର ରାସ୍ତା ବନ୍ଦ କରିଦେବ ।

ସେ ଦେଖିଲା ପିଲାଙ୍କ ଗହଣରେ ଗୀତା ଆସୁଚି । ଆଜି ଗୀତା ଗୋଟାଏ ବଡ଼ ଫୁଲ ଧରିଚି । ହେଇ ଗୀତା ସୁନନ୍ଦାକୁ ଦେଖି ଦୂରରୁ ହସିବାକୁ ଆରମ୍ଭ କଲାଣି । ନା,ସେ ଆଜି ମନା କରିବ । ଫୁଲ ସେ ମୋଟେ ଗ୍ରହଣ କରିବ ନାହିଁ । ସେ ଦମ୍ଭର ସହିତ ଠିଆ ହେଲା । ଶପଥ କଲା । ଠିକ୍ ଅଛି, ମୋର ଜନ୍ମଦିନରେ ହିଁ ତମେ ମୋତେ ଫୁଲଟିଏ ଦେଇପାରିବ । ମୁଁ ତାକୁ ଆଦରରେ ଗ୍ରହଣ କରିବି । ଅନ୍ୟଦିନେ ନୁହେଁ ।

କିନ୍ତୁ ହେଲା ନାହିଁ । ସୁନନ୍ଦା ଦେଖିଲା ସମସ୍ତେ କ୍ଲାସ୍‌କୁ ଚାଲିଗଲା ପରେ ତା ହାତରେ ଗୋଟିଏ ଫୁଲ ରହିଯାଇଚି । ଆରେ ଏଇଟା ପୁଣି କୁଆଡୁ ଆସିଲା ? ତା ମୁଣ୍ଡ ଝିମ୍‌ଝିମ୍ କରି ଉଠିଲା । ତା ଭିତରେ ସେ ଯନ୍ତ୍ରଣା ଅନୁଭବ କଲା । ଭୀଷଣ ଯନ୍ତ୍ରଣା ।

ସୁନନ୍ଦା ସେଦିନ କ୍ଲାସ୍ ନେଇପାରିଲା ନାହିଁ । କଅଣ ସେ ପଢ଼ାଇବ ତାର କିଛି ମନେପଡ଼ିଲା ନାହିଁ । ଏପରିକି କେଉଁ ବିଷୟ ସେ ପଢ଼ାଇବାକୁ ଆସିଚି ସେ କଥା ତାର ମନେରହୁନି । ସାହିତ୍ୟ ଓ ଗଣିତ ସବୁ ଏକାକାର ହେଇଯାଉଚି । ସେ ପ୍ରିନ୍ସିପାଲ୍‌ଙ୍କୁ କହି ନିଜ ରୁମ୍‌କୁ ଫେରିଆସିଲା ଏବଂ ଚିଠିଟିଏ ଲେଖିବସିଲା ।

ମୁଁ ଆଜି ସଂପୂର୍ଣ୍ଣ ଅସୁସ୍ଥ । ତେଣୁ ମୁଁ ତମକୁ କଅଣ କହିବି ଠିକ୍ କରିପାରୁ ନାହିଁ । ମୁଁ ଜାଣେ ତୁମେ କଲେଜରେ ମୋର ଗୋଟାଏ ବର୍ଷ ସହପାଠୀ ଥିଲ । ସେ ବିରଳ ସମୟର ଛାଇ ଭିତରେ ମୁଁ ଝାପ୍‌ସା ମଣିଷଟିଏ । ମୁଁ ଭାବୁଚି ତୁମେ ଦୂରରେ ଥିଲେ ଭଲ । ଦୂରତ୍ୱର ଅଭିଧାନରେ ଏକାନ୍ତ ଆତ୍ମୀୟତାର ଅନୁଭବର ଅର୍ଥ ଯେତେ ସ୍ୱପ୍ନିଳ ଓ ସୁନ୍ଦର, ପାଖରେ ପାଇବାର ଆତ୍ମବିଭୋରତାରେ ସେ ସ୍ୱପ୍ନ ସାକାର ହୁଏ ନାହିଁ । ଦୂରତ୍ୱ ହିଁ ମଣିଷକୁ ପାଖକୁ ଆଣେ, ଆଉ ପାଖରେ ଥିଲେ ଦୂରତ୍ୱର ମଧୁର ଇମେଜ ସବୁ ହଜିଯାଏ । ମିଳେଇଯାଏ ଆକାଶରେ ।

ସେ ଚିଠିଟି ଲେଖିସାରି ଗୋଟାଏ ଲଫାପାରେ ରଖି ଧରେଇ ଦେଲା ହଷ୍ଟେଲ ଚୌକିଦାରକୁ ଏବଂ କହିଲା- କେହି ମୋ ପାଖକୁ ଆସିଲେ ତାଙ୍କୁ ଏଇଟା ଦେବୁ ଏବଂ କହିବୁ, ମାଆ ଅସୁସ୍ଥ । ତା ଭିତରେ ଉଠିଆସୁଥିବା କୋହକୁ ବଡ଼ କଷ୍ଟରେ ଚାପି ରଖିଲା ଓ ବିଛଣାରେ ଶୋଇପଡ଼ିଲା ।



ସହଯୋଗ ୨୦୦୬

# ସଂପର୍କ

କିଏ ତୁମେ ବାଳିକା ? ତୁମେ କାହାର ଛବି ଆଙ୍କୁଚ ? ପ୍ରକୃତିର ନା ପୁରୁଷର ?

ଆଗରେ ସବୁଜ ବନାନୀ । ବନାନୀ ସେ ପାଖରେ ବିସ୍ତୀର୍ଣ୍ଣ ପ୍ରାନ୍ତର । ମେଘକୁ ଛୁଉଁଛି । ଦୂର ଦିଗ୍‌ବଳୟରେ ଲାଲ କୃଷ୍ଣଚୂଡ଼ାର ଅପୂର୍ବ ରଂଗ । ରଂଗର ହୋରି । କିଏ ତାର ଶିଳ୍ପୀ କେଜାଣି ? ରଂଗ ଓ ତୂଳୀ ଛଡ଼ା ସେ ଯେମିତି କିଛିଇ ଜାଣେନା ।

ଏଥର ମଧ୍ୟ ବାଳିକା ଗୁଣୁଗୁଣୁ ହେଇ ଗୀତ ଗାଇବାକୁ ଲାଗିଲା । ଏକ ମଧୁର ମର୍ଚ୍ଛନାରେ ସମଗ୍ର ବନରାଜି ଉନ୍ମନା ହେଇ ଉଠିଲା । ଏତେବି ମାଦକତା ସେ ସଂଗୀତରେ ?

କଥାକୁହ ବାଳିକା । କିଏ ତୁମେ ? ତୁମର ପରିଚୟ ? ଏ ସବୁଜ ଆକାଶ, ଦ୍ୟାବା ପୃଥିବୀ ସବୁ ମୋର । କୋଉ ଅୟୁତ ଯୁଗରୁ ଏ ରାଜ୍ୟରେ ମୋର ଆଧିପତ୍ୟ । ମୋର ଏ ରାସ୍ତାରେ ମୁଁ ତ ତୁମକୁ କେବେବି ଦେଖିନାହିଁ । ତେବେ ତୁମେ କଅଣ ମୋତେ ଲୁଚି ଲୁଚି ବୁଲୁଥିଲ ?

ବାଳିକା ତଥାପି ନିରୁତ୍ତର । ଯେମିତି କୋଉ ରଂଗର ସମ୍ମିଶ୍ରଣରେ ସେ ତାର ଇପ୍‌ସିତ ଛବିଟିର ଜୀବନ୍ତ ରୂପ ଦେଇପାରିବ, ତାହାହିଁ ଭାବୁଥିଲା ।

ଏ ଛବିଟିରେ ତ ମୋ ରୂପର ସାଦୃଶ୍ୟ ରହିଚି ବାଳିକା ? ତେବେ କଅଣ ତୁମେ ମୋର ପରିକଳ୍ପନା କରୁଚ ଏଯାଏ ? ଯଦି ତାହାହିଁ ସତ୍ୟ ତେବେ ଏଇ ଦେଖ, ମୁଁ ଏଇଠି ଛିଡ଼ା ହେଇଚି । ତୁମର ଅତି ପାଖରେ । ତୁମେ ନକହିବା ଯାଏ ମୁଁ ଗୋଟିଏ ଇଞ୍ଚ ମଧ୍ୟ ହଟିବି ନାହିଁ ।

ଏଥର ବାଳିକା ମୁହଁ ଟେକିଲା । କହିଲା ଏ ଛବି ତୁମର ନୁହେଁ । ସୂର୍ଯ୍ୟର, ଯାହାକୁ ମୁଁ କେବେବି ଦେଖି ନାହିଁ । ଦେଖିପାରିବି ନାହିଁ ମଧ୍ୟ । ଗୋଟାଏ ମାନସିକତାର ଛବି ମାତ୍ର ।

ମୁଁ ଯଦି ସେଇ ବୋଲି ନିଜକୁ ଦାବୀ କରେ ? ତୁମେ ଅସ୍ୱୀକାର କରିବ ?

ବାଳିକା ଏଥର ଆଖି ଖୋଲି ତାଙ୍କୁ ଦେଖିଲା ଏବଂ ସଂଗେ ସଂଗେ ଆଖି ବନ୍ଦ କରିଦେଲା । ଗୋଟାଏ ଅସମ୍ଭବ ଆଲୋକର ଉତ୍ତାଳ ତରଙ୍ଗ ତାକୁ ଅନେକ ଦୂରକୁ ଭସାଇ ନେଲା ।

ଆଃ, ଅମାପ ସୌନ୍ଦର୍ଯ୍ୟର ଅଧିକାରୀ ତୁମେ ବାଳିକା । ଏତେ କୋମଳ କରି ତୁମକୁ କିଏ ଗଢ଼ିଲା ? ତୁମ ଅର୍ଦ୍ଧନିମୀଳିତ ଆଖି, ଫୁଲ ପାଖୁଡ଼ାର ଓଠ, ମସୃଣ ଚିବୁକ, ସୁସ୍ପଷ୍ଟ ଓ ତୀକ୍ଷ୍ଣ ନାସିକା ଏବଂ ସର୍ବୋପରି ସୁଗଠିତ ଦେହ ଓ ପ୍ରଶାନ୍ତ ମୁଖ, ପ୍ରତ୍ୟେକ ଅଙ୍ଗ ସୌଷ୍ଠବ ଏକ କୁଶଳୀ କଳାର ଶ୍ରେଷ୍ଠତମ ନିଦର୍ଶନ । ତାକୁ କିପରି ବର୍ଣ୍ଣନା କରାଯାଇପାରିବ କୁହ ? ସେ ବର୍ଣ୍ଣନା ପାଇଁ ମୋ ଠାରେ ଶବ୍ଦର ଅଭାବ ବାଳିକା ।

ଥାଉ, ଆଉ ପ୍ରଶଂସାର ଆବଶ୍ୟକତା ନାହିଁ । ମୁଁ ପ୍ରଶଂସା ପ୍ରିୟ ନୁହେଁ ।

ତୁମେ ଟିକିଏ ନିର୍ଦ୍ଦୟ ଜଣାପଡୁଛ ବାଳିକା । ମୁଁ ତୁମର ମିଛ ପ୍ରଶଂସା କରୁ ନାହିଁ । ମୁଁ ସତ୍ୟର ପୂଜାରୀ ଏବଂ ସତ୍ୟହିଁ ସୁନ୍ଦର, ତାର ବିକଳ୍ପ ନାହିଁ ।

ଏଥର ଆଖି ଖୋଲିବି ନାହିଁ, ଏତେ ଉଜ୍ଜ୍ୱଳ ଆଲୋକ ଦେଖି ମୁଁ ସହ୍ୟ କରିପାରିବି ତ ? ମୋର ଦୃଷ୍ଟିଶକ୍ତି ଲୋପ ପାଇବ ନାହିଁ ତ ?

ଏସବୁ କଅଣ ମୋର ପ୍ରଶଂସା ନୁହେଁ ? ମୁଁ କଅଣ ସତରେ ତାର ଅଧିକାରୀ ? କାହିଁ, ମୋ ଦେହରେ ଏତେ ଆଲୋକ ଅଛି ବୋଲି ମୁଁ ତ ଜାଣି ପାରୁ ନାହିଁ ।

ମୁଁ ବି ତ ସେଇ କଥା ତୁମକୁ ପଚାରୁଚି, ହେ ମୋର ଆଲୋକ । ମୁଁ ସାମାନ୍ୟ, ଅତି ସାମାନ୍ୟ ।

ତୁମେ ଆଖି ଖୋଲ ବାଳିକା । ଦେଖ ମୁଁ କିଛି ନୁହେଁ । ମୋତେ କିଛି ନୁହେଁ । ମୁଁ ସାମାନ୍ୟ ମାତ୍ର । ଅତି ସାମାନ୍ୟ ଓ କ୍ଷୀଣ ଆଲୋକଟିଏ ମାତ୍ର, ତମ ତୁଳନାରେ...

ବାଳିକା ଏଥର ଆଖି ଖୋଲିଲେ ଏବଂ ଏକ ବିମୁଗ୍ଧ ଆଖିରେ ଅନେଇ ରହିଲେ ।

ଆଃ, ମୁଁ କଅଣ ଦେଖୁଚି ? ଆନନ୍ଦର ଆତିଶଯ୍ୟରେ ମୁଗ୍ଧ ହୋଇ ଯାଉଥିଲେ ଆଲୋକ । ତାଙ୍କ ଆଖି ମୁଦି ହୋଇ ଆସୁଥିଲା । ଏକ ବିହ୍ୱଳିତ ସ୍ୱରରେ କହିଲେ ସେ, ମୁଁ ତୁମକୁ ହିଁ ଖୋଜୁଥିଲି ଅନେକ ଦିନୁଁ ।

ମୋତେ ? ଅନେକ ଦିନୁ ? କେମିତି ?

ମୋର ଗତି ପଥରେ ଥରେ ମାତ୍ର ତୁମର ଛାୟାବିମ୍ବ ପ୍ରତିଫଳିତ ହୋଇଥିଲା । ତୁମେ ସେଦିନ ବି ଏମିତି ଗୁଣୁଗୁଣୁ ହୋଇ ଗୀତଟିଏ ଗାଇଥିଲ । ସେ ବୀଣାର ଝଙ୍କାର ଶୁଣିବା ମାତ୍ରେ ହିଁ ମୁଁ ତୁମକୁ ଖୋଜିଥିଲି । କିଏ ଇଏ ? କାହାର ଏ ସ୍ୱର ? ମୋ ଭିତରେ ସେ ସ୍ୱର ଓ ତାର ଛାୟାବିମ୍ବ ଏବେବି ଅଲିଭା ହୋଇ ରହିଚି ବାଳିକା । ମୁଁ ସେଇ ଦିନୁ ତୁମକୁ ଖୋଜୁଚି ।

ଆଲୋକ ଆଗେଇ ଗଲେ ବାଳିକା ପାଖକୁ । ସେ ଦୁଇ ହାତ ପ୍ରସାରିତ କରି ତାର ମୁଖମଣ୍ଡଳକୁ ଦୁଇ ପାପୁଲି ଭିତରେ ଆଞ୍ଜୁଳେଇ ନେବାକୁ ଇଚ୍ଛା କରୁଥିଲେ । ଏକ ଅପୂର୍ବ

ଆବେଗରେ ତାଙ୍କର ସମସ୍ତ ଦେହ ରୋମାଞ୍ଚିତ ହୋଇ ଉଠୁଥିଲା । ସେ ହୁଏତ ସଂବିତ ହରାଇ ବସୁଥିଲେ । ସ୍ପର୍ଶର ଆତୁରତା ତାଙ୍କୁ ଏକ ପ୍ରକାର ପାଗଳ କରି ତୋଳୁଥିଲା ।

ନା, ନା, ମୋତେ ତୁମେ ଛୁଅଁନା । ତୁମେ ମୋତେ ଭଲ ପାଉଚ- ଏଇଟା ମୋର ସୌଭାଗ୍ୟ । ମୁଁ ତା'ଠୁ ଅଧିକ କିଛି ନେଇ ତୁମର ଋଣୀ ହୋଇ ପାରିବିନି । ମୋର ଭୟ, ତୁମର ସେ ମଧୁର ସ୍ପର୍ଶ କାଳେ ମୋତେ ଭସ୍ମ କରିଦେବ ? ମୋର ସମସ୍ତ ସତ୍ତାକୁ ଯଦି ନିଷ୍ପ୍ରଭ ଓ ନିଷ୍କ୍ରିୟ କରିଦିଏ ? ତୁମର ସ୍ପର୍ଶ ମୋତେ ସ୍ୱର୍ଗୀୟ ସୁଖ ଦେବ ନିଶ୍ଚୟ । କିନ୍ତୁ ମୁଁ ସେ ସ୍ୱର୍ଗୀୟ ସୁଖରେ ଜଳିଯିବି ନାହିଁ ତ ?

ଏକ ପ୍ରଚଣ୍ଡ ବିସ୍ଫୋରଣ ହେଲା ଆଲୋକ ଭିତରେ ଯେମିତି । ତାଙ୍କର ସ୍ନାୟୁ ତନ୍ତ୍ରୀଗୁଡ଼ିକ ଚଟଚଟ ଛିଣ୍ଡି ଯିବାକୁ ଲାଗିଲା । ଗର୍ବର ହିମାଳୟ ତାଙ୍କର ଭୁସୁଡ଼ି ପଡୁଥିଲା ମାଟି ଉପରେ ଖଣ୍ଡ ଖଣ୍ଡ ହୋଇ । ତାଙ୍କ ଭିତରଟା ହାହାକାର କରି ଉଠିଲା ।

ବାଳିକା ହୁଏତ ବୁଝିଲା ତାଙ୍କ ମନର କଥା । ଏପରି କଠୋର ହେବା ଉଚିତ ହେଲା ନାହିଁ ବୋଧେ । ସେ ଭାବିଥିଲା ସ୍ପର୍ଶରେ କଅଣ ଥାଏ ଯେ ? ସାମାନ୍ୟ ସ୍ପର୍ଶ ମାତ୍ର ।

ସେ ପ୍ରତିଶ୍ରୁତି ମାଗିଲା । ଭିନ୍ନ ପ୍ରତିଶ୍ରୁତି- କୁହ, ତୁମ ସ୍ପର୍ଶର ସୀମାରେଖା ଡେଇଁ ଆଗକୁ ଆସିବ ନାହିଁ ତ ? ସ୍ପର୍ଶାତୁର ମଣିଷର ଆଶାର ସୀମା ନ ଥାଏ ପ୍ରିୟ ଆଲୋକ ମୋର । ସ୍ପର୍ଶର ମହମବତୀ ଆମର ତରଳି ଯାଉଥିଲା ବେଳେ ତୁମେ ତାକୁ ଅଟକେଇ ପାରିବ ?

ପ୍ରାଣପ୍ରିୟ ବାଳିକା ମୋର । ମୁଁ ଓ ତୁମ ଭିତରେ ସୀମାହୀନ ଦଗନ୍ତର ପାର୍ଥକ୍ୟ । ବିଜ୍ଞାନ ବି କଳି ପାରି ନାହିଁ ତୁମ ଓ ମୋର ବୟସର ପାର୍ଥକ୍ୟ । ତା ସତ୍ତ୍ୱେ ଆମ ଭିତରେ ଯୋଉ ଭଲ ପାଇବାର ଆବେଗ, ତାକୁ ଆମେ କେବେ ବି ରୋକି ପାରିନୁ । ତୁମର ଓ ମୋର ଗତିପଥ ଗୋଟିଏ ।

ତୁମ ଆକାଶରେ ମୁଁ ଓ ମୋ ଆକାଶରେ ତୁମେ, ସୃଷ୍ଟିର ଆରମ୍ଭରୁ ରହି ଆସିଛୁଁ ଏବଂ ଏକ ଅନନ୍ୟ ଆକର୍ଷଣ ହିଁ ଆମକୁ ଛନ୍ଦି ରଖିଛି । ଆମ ଭାଗ୍ୟର ବିଡ଼ମ୍ବନା ଏତିକି । ଏସବୁ ସତ୍ତ୍ୱେ ଆମେ କେବେବି ଏକାଠି ହୋଇ ପାରିନୁଁ କି ପାରିବୁ ନାହିଁ ମଧ୍ୟ । ଏହାହିଁ ସତ୍ୟ ।

ଏଇତ ସମୟ ହୋଇଗଲାଣି । ଦିନ ସରିବାକୁ ବସିଲାଣି ।

ଏଥର ତୁମେ ମୋତେ ବିଦାୟ ଦିଅ ପ୍ରିୟ ।



ସୁଧନ୍ୟା- ୨୦୦୫

# ସମୁଦ୍ର ସ୍ନାନ

ଅପରୂପା ଶାଢ଼ି ସଜାଡ଼ିଲା । ତା' ଓଠରେ ହଳି ପଡ଼ିଥିଲା ଟେନାଏ ହସ । ସେମିତି ସେ ହସେ ।

'ତୁମେ ମୋ ପ୍ରଶ୍ନର ଉତ୍ତର ଦେବନି ?' ସବୁ ନୀରବତା ଏକ ଧ୍ୱଂସାତ୍ମକ ବିସ୍ଫୋରଣର ସୂଚନା ।

ସୁମନ୍ତ ଅପରୂପାର ହାତ ପାପୁଲିକୁ ଗୋଟାଏ ଆବେଗିକ ଆଶ୍ଲେଷଣରେ ଧରିଥିଲା । ତା'ର ମନେହେଉଥିଲା ସ୍ପର୍ଶରେ କ'ଣ ଏମିତି ଥାଏ ଯେ ତାହା କେମିତି ଗୋଟାଏ ବର୍ଣ୍ଣନା କରିପାରୁ ନଥିବା ଅନୁଭବର ଶିହରଣ ସୃଷ୍ଟି କରେ ? ତେବେ ସ୍ପର୍ଶ କ'ଣ ? କିଛି ଆପେକ୍ଷିକ ତତ୍ତ୍ୱ ଅଛି ଏଥିରେ ?

ସୁମନ୍ତ ବିଜ୍ଞାନର ଛାତ୍ର । ପଦାର୍ଥ ବିଜ୍ଞାନରେ ସ୍ନାତକୋତ୍ତର ପରେ ସେ ଏବେ ଅଧିକ ଶିକ୍ଷା ପାଇଁ ଗବେଷଣାରତ । ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ବସ୍ତୁର ଅଣୁ ପରମାଣୁକୁ ନେଇ ସେ ପରୀକ୍ଷାଗାରରେ ଦୀର୍ଘ ତିନି ବର୍ଷ ହେଲା ପ୍ରଫେସର ଦୀପା କାପୁରଙ୍କ ଅଧୀନରେ ଗବେଷଣା କରୁଚି । ସେ ଗବେଷଣା ଭିତରୁ ବସ୍ତୁକୁ ବହୁ ଭାବରେ ଦେଖିଛି । ତାକୁ ଏପାଖ ସେପାଖ କରିଛି । ଲାବୋରେଟୋରୀର ନିବୁଜ କୋଠରୀ ଭିତରେ ପ୍ରଫେସର ଦୀପା ଓ ସୁମନ୍ତର ହାତ ବହୁବାର ସଂଘର୍ଷର ସମ୍ମୁଖୀନ ହୋଇଛି । ସେ ସଂଘର୍ଷରୁ ସେ କେବେ ବିସ୍ଫୋରଣର ସୂଚନା ପାଇ ନଥିଲେ ମଧ କେମିତି କେଜାଣି ପ୍ରଫେସର ଦୀପା ତାକୁ କେତେଥର କହିଛନ୍ତି ତୁମ ଦେହରେ ଉତ୍ତାପ ଅଛି କି ? ମାନେ ତୁମକୁ ଜ୍ୱର ବା ସେମିତି କିଛି... ?

ବୁଝି ପାରେନା ସୁମନ୍ତ । ସେ ତ ଠିକ୍ ଅଛି ।

କିନ୍ତୁ ଆଜି ? ଆଜି ବସ୍ତୁ ନୁହେଁ- ଗୋଟାଏ ହାତର ସ୍ପର୍ଶରେ ଏତେ ଉତ୍ତାପ କୋଉଠୁ ସୃଷ୍ଟି ହେଉଛି ? ବିଜ୍ଞାନର ଥିଓରି ଗୁଡ଼ାକ ତା' ପାଖରେ ନିଷ୍ପ୍ରଭ ହୋଇପଡୁଛି ?

ସୁମନ୍ତ ଆଶ୍ଚର୍ଯ୍ୟ ହେଲା ।

ତା ଆଗରେ ବିଶାଳ ସମୁଦ୍ର । ଆଦିଗନ୍ତ ବ୍ୟାପୀ ରହିଛି ନୀଳ ଜଳରାଶି । ଜଳରାଶିର ସ୍ଫିତ ବକ୍ଷ । ତା' ଉପରେ ଢେଉ । କଳା ଧଳା ଶାଢ଼ି ପରି ଫେଣମିଶା ଢେଉଗୁଡ଼ାକ ନୀଳ

ଜଳରାଶିରେ ଖେଳି ବୁଲୁଥିଲେ । ସୁମନ୍ତ ଦେଖୁଥିଲା । ସୁମନ୍ତ ଦେଖୁଥିଲା ସମୁଦ୍ରର ସ୍ଫିତ ବକ୍ଷର ସିଂହଦ୍ୱାର ଖୋଲି ଉଠି ଆସୁଛି ଚତୁର୍ଦ୍ଦଶୀର ଚନ୍ଦ୍ର । ସଦ୍ୟ ବିବାହିତା ନାରୀର ସିନ୍ଦୁର ପରି ଲାଲ୍ । ଏକଦମ୍ ଲାଲ୍ ।

ସୁମନ୍ତର ମନେହେଲା ଦିଗ୍‌ବଳୟର ସେ ଜହ୍ନ ଉଠା ମୁହଁଟାକୁ ଦୁଇ ହାତର ପାପୁଲି ଭିତରେ ଧରି ରଖି ସବୁଯାକ ସୌନ୍ଦର୍ଯ୍ୟକୁ ପିଇଯିବକି ଆଉ ?

ଅଗସ୍ତି ଋଷି ପିଇ ଦେଇଥିଲେ ସମୁଦ୍ରକୁ ଗୋଟାଏ ଆଞ୍ଜୁଳାରେ ।

'ଆଃ', କହିଥିଲେ ମୁନିବର, ଯୁଗ ଯୁଗର ଶୋଷ ମେଣ୍ଟିଗଲା ।'

ସୁମନ୍ତ କେବେବି ବୁଝିପାରେ ନାହିଁ ଗୋଟାଏ ଆଞ୍ଜୁଳାରେ ସମୁଦ୍ରକୁ କେମିତି ପିଇହୁଏ ? ପୃଷ୍ଠା ପରେ ପୃଷ୍ଠା ଓଲଟେଇ ଚାଲିଥିଲା ସୁମନ୍ତର ବିଜ୍ଞାନ ବହିଗୁଡ଼ିକ । କିନ୍ତୁ କାହିଁ ?

ତମେ କିଛି କହିବନି ଅପରୂପା ? ମୋ କଥାର ଉତ୍ତର ? ସୁମନ୍ତ ପଚାରିଥିଲା ।

ଏ, ମା, ଏ ବାଲି କଙ୍କଡାଟା କୁଆଡ଼େ ଗଲାମ ? ସେ ଗୋଡ଼ ଆଙ୍ଗୁଳିରେ ଖୋଜୁଥିଲା ବାଲି କଙ୍କଡ଼ା । ଆଉ ଚତୁର ବାଲି କଙ୍କଡ଼ା ଅତି କ୍ଷିପ୍ର ଗତିରେ ବାଲି ଖୋଳି ପଶି ଯାଉଥିଲା ବାଲି ଭିତରକୁ । ମଣିଷର ହାତ ତା' ପାଇଁ ଖାଲି ଅସହ୍ୟ ନୁହେଁ ଦୁର୍ବୋଧ ମଧ ।

ଅପରୂପା ଠିଆ ହୋଇଥିଲା ତଳକୁ ମୁହଁପୋତି । ଛୋଟ ଢେଉଟିଏ ଆସି ତା ପାଦ ଦୁଇଟିକୁ ଧୋଇଦେଲା ଏବଂ ପୁଣି ସମୁଦ୍ର ଭିତରକୁ ପଳେଇଲା ।

ଆସ ଟିକିଏ ଭିତରକୁ ଯିବା । କହିଥିଲା ସୁମନ୍ତ ।

ହସିଦେଲା ଅପରୂପା । ଯିବା ? ଭିତରକୁ ? କେତେ ଭିତରକୁ ?

ମୁଁ ତୁମକୁ ବେଶୀ ଭିତରକୁ ଡାକି ପାରିବିନି । ସେମିତି ଗୋଟାଏ ଦୁଃସାହସ ମୁଁ କରି ପାରିବିନି କିନ୍ତୁ ଏଇ ଅଳ୍ପ ଭିତରକୁ ? ଆଣ୍ଠୁଏ ? କହିଲା ସୁମନ୍ତ ।

ଅପରୂପା ଜୋତା ଖୋଲିଥିଲା । ଶାଢ଼ିଟାକୁ ସାମାନ୍ୟ ଟେକିଲା । ତା'ପରେ ଦେଖିଲା ସୁମନ୍ତକୁ । ଜହ୍ନ ଉଠିଆସୁଥିଲା କପାଳ ଉପରକୁ । ଚିକ୍‌ଚିକ୍ କରୁଥିଲା ସମୁଦ୍ରର ଢେଉ । ପଛପଟେ ରାଶି ରାଶି ବାଲି । ଖାଲି ବାଲି ।

ତରଙ୍ଗ ଓ ତରଙ୍ଗ । ସୁମନ୍ତ ସେ ତରଙ୍ଗ ଭିତରେ ବୁଡ଼ିଯିବ କି ?

ଅପରୂପାର ପାଦ ପଛକୁ ପଡ଼ିଲା ।

ଏ କ'ଣ, ତୁମେ ଆଗକୁ ଯିବନି ?

ସୁମନ୍ତ ଭେଟିଥିଲା ଅପରୂପାକୁ ସେଦିନ ପ୍ରଥମକରି । ପରିଚୟ ଯୋଡ଼ିଥିଲା ଚିଠି ଓ ତା'ପରେ ସାମାନ୍ୟ କେତୋଟି ଫୋନ୍ । ଗଳ୍ପ ଓ କବିତା ମାଧ୍ୟମରେ ଗଢ଼ି ଉଠିଥିଲା ସେମାନଙ୍କ ସମ୍ପର୍କ ।

ସେ ଯେତେବେଳେ ପ୍ରଥମ କରି ତାକୁ ଦେଖିଲା, ଦେଖିଲା ସେ ଦଉଡ଼ି ଆସୁଛି ଗିଲ୍ଲାଟିଏ ଦେଖି, ସୁମନ୍ତର ମନେହେଲା ସେ ଯେମିତି ଝିଅଟିକୁ ଦେଖିଛି ଅନେକ ଆଗରୁ । ସେତେବେଳେ ଦୁଇ ଜଣଙ୍କର ହସ ହିଁ ପ୍ରଥମ ପରିଚୟ, ଆଦ୍ୟ ପର୍ବ ଆରମ୍ଭ କରିଥିଲା । ମୋଟେ ମୁହଁ ନଖୋଲି ଯେ ଅନେକ କଥା କହିହୁଏ, ବିଜ୍ଞାନର ଛାତ୍ର ସୁମନ୍ତ ବୁଝିଥିଲା ସେଦିନ । ମନର ଭାଷା ପାଖରେ ବିଜ୍ଞାନର ଭାଷା ବରାବର ହାର ମାନେ ।

ବସ୍ତୁ ଭିତରେ ଥାଏ ଅଣୁ । ଅଣୁରୁ ପରମାଣୁ । ଏହା ହିଁ ବିଜ୍ଞାନର ସତ୍ୟ ।

ବିନା ଅଣୁରୁ ପରମାଣୁ ସମ୍ଭବ ନୁହେଁ । କିନ୍ତୁ ବିନା ଅଣୁରୁ ଭାଷାର ବିସ୍ଫୋରଣ ସମ୍ଭବ । ଏହା ଏକ ମାନସିକ ସତ୍ୟ, ଯାହା ବିଜ୍ଞାନ ବୁଝିପାରେ ନାହିଁ ।

ବାହାରେ ବର୍ଷାର ସଙ୍କେତ । ଏ କ'ଣ ? ମେଘତ କୋଉଠି କିଛି ଦେଖାନଥିଲା । ଚତୁର୍ଦ୍ଦଶୀର ଚନ୍ଦ୍ର ତଥାପି ସ୍ୱଚ୍ଛ ଓ ନିର୍ମଳ ଦେଖାଯାଉଥିଲା । ହୁଏତ ପଚାରୁଥିଲା, କୁହତ, ମୁଁ କ'ଣ ପୂର୍ଣ୍ଣମୀଠାରୁ ଅଧିକ ସୁନ୍ଦର ଓ ସ୍ମରଣୀୟ ନୁହେଁ ?

ଅପରୂପା ଚାଲିବାକୁ ଆରମ୍ଭ କଲାଣି ପଛକୁ, ସୁମନ୍ତକୁ ପଛରେ ପକାଇ । ଆଉ ବାଲି କଙ୍କଡ଼ାଟି ? ବାଲି ଭିତରୁ ବାହାରି ସାମାନ୍ୟ ଦେଖିଲା ଏବଂ ତା'ପରେ ଦ୍ରୁତ ବେଗରେ ଦଉଡ଼ିବାକୁ ଆରମ୍ଭ କଲା । ସେ କାହାକୁ ଭୟ କରୁଥିଲା କେଜାଣି ? ସମୁଦ୍ରକୁ ନା ବାଲିକୁ ? ଢେଉକୁ ନା ଢେଉର ଅନନ୍ୟ ଆହ୍ୱାନକୁ ? ନିଜ ଭିତରେ ଜହ୍ନ ଭଳି ଉଠି ଆସୁଥିବା ସତ୍ୟକୁ ନା ସୁମନ୍ତକୁ ?

ସୁମନ୍ତ ବଡ ହାଲିଆ ହୋଇପଡ଼ିଛି ଯେମିତି । ସେ ଯେମିତି ବାଲିରେ ଆଉ ଚାଲିପାରୁ ନାହିଁ । ଅସମ୍ଭବ ଅବଶତା ତା'ର ଗୋଡ଼ ଦୁଇଟିକୁ ଭିଡି ଧରୁଥିଲା ।

ବାଲି କଙ୍କଡ଼ାଟି କିଛି ଦୂର ଯାଇ ଅଟକିଲା ଓ ପଛକୁ ଦେଖିଲା । କେତେ ଭୟାର୍ତ୍ତ ସେ ? ତା'ପରେ ସେ ପୁଣି ଦଉଡ଼ିଲା ।

ଜହ୍ନ ଅସ୍ପଷ୍ଟ ହୋଇ ଆସୁଥିଲା ।

ଆକାଶର ମେଘ ତାକୁ ଏମିତି ବରାବର ହଇରାଣ କରେ । ଯଦିଓ ଜହ୍ନ ଜାଣେ ମେଘ ତାକୁ କେବେବି ଚିରଦିନ ନିଜ ଭିତରେ ଢାଙ୍କି ରଖିପାରିବ ନାହିଁ । ଗୋଟିଏ ଚଲାପଥର ଯାତ୍ରୀ, ମେଘ ଓ ଜହ୍ନ ବରାବର ଅଲଗା । କେବେବି ଏକାଠି ହୋଇପାରନ୍ତିନି ।

ବାଲି କଙ୍କଡ଼ା ଆଉ ଦେଖାଯାଉ ନଥିଲା । ହୁଏତ ସମୁଦ୍ରର ଢେଉ ତାକୁ କେବେଠୁ ନିଶ୍ଚିହ୍ନ କରିଦେଇଥିଲା ନିଜ ଭିତରେ ।



ମୁକ୍ତି-୨୦୦୫

# ଜଉଘର

ରାଜେନ୍ଦ୍ର ଘର ଗେଟ ପାଖରେ ପହଞ୍ଚି ଟମକି ଠିଆ ହୋଇଗଲା । ହାତ ଘଡ଼ିକୁ ଦେଖିଲା । ସାତଟା ବାଜିବ । ସଞ୍ଜ ହୋଇ ଆସିଲାଣି । ଏବେ ଅନ୍ଧାର ଟିକେ ପତଳା ହୋଇଚି । କିନ୍ତୁ ବହଳ ହେବାକୁ କେତେବେଳ ? ଥରେ ଅନ୍ଧାରଟା ମାଡ଼ି ଆସିଲେ ସେ ସମୁଦ୍ର ଜୁଆର ପରି ପବନ ବେଗରେ ମାଡ଼ିଯାଏ । ଗଛ ବୃଛ ସବୁକୁ ଗିଳି ପକେଇ ହଜମ କରିଦିଏ । ସେମାନଙ୍କ ସତ୍ତା ଲୋପ କରିଦିଏ । ଅନ୍ଧାର କେବଳ ଅନ୍ଧାର । ସେଠି ବସ୍ତୁ ସତ୍ତା ଶୂନ୍ୟ ହୁଏ ।

ରାଜେନ୍ଦ୍ର ଦେଖିଲା ହେଇତ ରାସ୍ତା ସେ ପାଖର ସେ ଚା' ଦୋକାନୀଟା ତାର ସେ ପୁରୁଣା ପେଟ୍ରୋମାକ୍ସ ଲାଇଟ୍ ଜଳେଇଲାଣି । ଦି' ତିନିଟା ଲୋକ ମଧ ଆସି ସେଠି ଜୁଟିଲେଣି । ଜଣେ ତ ସେ କାଠ ପଟାକୁ ଦୁଇ ପାଖରେ ଦୁଇଟା ବାଉଁଶ ଖୁଣ୍ଟି ପୋତି ନିତିଦିନ ପରି କରାଯାଇଥିବା ବେଞ୍ଚରେ ବସିବ ବୋଲି ଦୁଇଥର ତାକୁ ଖୁବ୍ ଜୋର୍‌ରେ ଝାଡ଼ି ସେଥିରୁ ଧୂଳି ଉଡେଇ ସଫା କଲାଣି । ଆଉ ସେ ଆର ଟୋକା ତ ଯିଏ କି ସେ ହାଫ୍ ସ୍ଲିଭ ଥିବା ବେନିଅନଟାଏ ପିନ୍ଧି ଏବଂ ବେକରେ ଗୋଟାଏ ଗୋଟିକିଆ ରୁଦ୍ରାକ୍ଷମାଳାର ମାଳାଟିଏ ଛାଡ଼ିଯାଏ ଲମେଇଥାଏ, ମୁହଁରେ ତାରଅଳ୍ପ ଅଳ୍ପ ଦାଢ଼ି । ଆଜିତ ଜିନ ପେଣ୍ଟଟାଏ ପିନ୍ଧିଚି କି କଅଣ । ସେ ନିଜକୁ ଏଅଞ୍ଚଳର, ଗୋଟାଏ ଜୀବନରେ ଅନେକ କିଛି ହାରିଯାଇଥିବା କିମ୍ବା ବ୍ୟର୍ଥ ପ୍ରେମିକ ପରି ମାନେ ଦୁଇ ତିନି ବା ତତୋଧିକ ଝିଅଙ୍କ ଠାରୁ ଶକ୍ତ ଧକ୍କା ଖାଇ ଥିଲା ପରି ଯୁବକ ପରି ଦେଖାଯାଉଚି । ଏବଂ ସେମିତି ମଧ କଥାବାର୍ତ୍ତା କରେ । ଅନେକ ସମୟରେ ରାଜେନ୍ଦ୍ର ତାକୁ ସାଇକେଲରେ ଯାଉଥିବା ବେଳେ କିମ୍ବା ଏପରିକି ଚାଲି ଚାଲି ଯାଉଥିବାବେଳେ ରାସ୍ତାର ଦୁଇ ପାଖରେ ଥିବା ପ୍ରତିଷ୍ଠିତ କିମ୍ବା ନୂଆ ଆତ୍ମପ୍ରକାଶ କରୁଥିବା ଦେବଦେବୀଙ୍କ ପ୍ରତି ସେମାନଙ୍କ ସମ୍ପୂର୍ଣ୍ଣ ଅଜାଣତରେ ହାତ ଉଠେଇ ଛାତିରେ ଓ ମଥାରେ ଛୁଇଁ ଚାଲି ଯାଉଥିବାର ମଧ ଦେଖିଚି । ରାଜେନ୍ଦ୍ରର ଏ କଥା ମଧ ମନେପଡ଼ିଲା ଯେ ଥରେ ସେ ଟୋକାଟା ଏମିତି ଗୋଟାଏ ବରଗଛ ମୂଳ ରାସ୍ତାରେ ଯାଉଥିଲାବେଳେ ସେଠି ନୂଆ ଆସ୍ଥାନ ଜମେଇଥିବା କେହି ଜଣେ ନାଁ ଜଣାନଥିବା ଦେବ କି ଦେବୀ ହେବ ବୋଧେ, ତାଙ୍କରି ଉଦ୍ଦେଶ୍ୟରେ ନିଜର ଭକ୍ତିପୂତ ପ୍ରଣାମ ଜଣଉଥିଲାବେଳେ ସାଇଁ କରି ସାଇକେଲ ମାରି ସେ ବବ୍‌କଟା ଝିଅଟା, ଚାଲିଯିବାରୁ ତାକୁ କେମିତି ବୁଲି ବୁଲି ପଛକୁ ଦେଖୁଥିଲା ଏବଂ ତାକୁ ସାମ୍ନାରୁ ଦେଖିପାରି ନଥିବାରୁ ମନେ ମନେ ବୋଧେ ଅଶେଷ ଅନୁତାପ କରୁଥିଲା । ସେଇ ଟୋକାଟା ଆଜି କେମିତି ଖାଲି ତରକ

ମରୁଜ ହେଉଛି । ସେ ଜାଣେ ବୋଧେ ଏଇଟା ସୁମିତ୍ରାର ଆସିବାର ବେଳ । ସୁମିତ୍ରା ଏଇ ବାଟେ ଆସିବ । ଏଇ ସମୟରେ ତ ଆଉ କେହି ଝିଅ/ନାରୀ/ମହିଳା ଏଇ ରାସ୍ତାରେ ଯିବାଆସିବା କଥା ରାଜେନ୍ଦ୍ରକୁ ଜଣାନାହିଁ । ଏ ନିକାଞ୍ଚନ ଜାଗାଟାକୁ କିଏ କାହିଁକି ଆସିବ ? ଏ ସାହିରେ ଏ ଅଞ୍ଚଳରେ ଏବଂ ସର୍ବୋପରି ଏ ରାସ୍ତାରେ ସୁମିତ୍ରା ଏକମାତ୍ର ଆକର୍ଷଣ । ଅନ୍ତତଃ ସେ ଚାଲି ଯାଉଥିବାବେଳେ ଏପରି କେହି ନାହିଁ ଯେ ତା ଉପରକୁ ଆଖି ଟେକି ନଦେଖିଛି ।

ସେ ନିଶ୍ଚୟ ସେଇ ସୁମିତ୍ରାକୁ ହିଁ ଅପେକ୍ଷା କରିଛି । ତା ନହେଲେ ହୋଟେଲ୍‌ରେ ଚୁଲୀ ଲାଗିବା ପୂର୍ବରୁ ସେ ଟୋକା ସମେତ ସେ ଲୋକମାନେ କାହିଁକି ଆସି ସେଠି ଭିଡ଼ ଜମାନ୍ତେ ? ରାଜେନ୍ଦ୍ର ସେମାନଙ୍କ ସାଇକ୍ଲୋଜି ବେଶ କେତେ ଦିନ ହେଲା ଲକ୍ଷ୍ୟ କରି ଆସୁଛି । ସେ କଅଣ ଜାଣେ ନାହିଁ ?

ଆଉ ସୁମିତ୍ରା ବି... । ରାଜେନ୍ଦ୍ରର ମନେ ହେଲା, ସେ ଆସୁ ଆସିଲାବେଳେ ଠିକ୍ ସେଇ ଜାଗାରେ ପାଦର କ୍ଷୀପ୍ରତା କମାଇ ଦିଏ ଏବଂ କଣେଇ କଣେଇ ସେ ଆଡ଼କୁ ଅନାଏ ।

ରାଜେନ୍ଦ୍ରର ଅନୁମାନ ଠିକ ନହୋଇପାରେ । ସେ ଯାହା ସୁମିତ୍ରା ବିଷୟରେ ଭାବୁଛି ତାହା ଭୁଲ୍ ହୋଇପାରେ । ସେ ମନେ ପକେଇବାକୁ ଚେଷ୍ଟା କଲା, ଏମିତି ବି ହୋଇପାରେ ଯେ ସୁମିତ୍ରା ସେ ଟୋକାର ଢଙ୍ଗ ଢାଙ୍ଗ ଦେଖି ଡରୁ ଥାଇପାରେ । ଭାବୁଥିବ ଯେ ସେ ଟୋକାର ଗତିବିଧି ସନ୍ଦେହଜନକ ଥିବାରୁ ତାର ଗୋଟାଏ ମନ୍ଦ ଉଦ୍ଦେଶ୍ୟ ଥାଇପାରେ । ମୁହଁ ସଞ୍ଜ ଅନ୍ଧାରରେ ସେ ଯେ ଗୋଟିଏ କିଛି କରି ନ ବସିବ ସେ କଥା କିଏ କହିବ ? ଆଖପାଖରେ ତାକୁ ସାହାଯ୍ୟ କରିବାକୁ କିଏ ଅଛି ? ସେ ସାହାଯ୍ୟର ବା ମୂଲ୍ୟ କଅଣ ଅଛି ? ଥରେ କିଛି ଗୋଟାଏ ଅଘଟଣ ଘଟିଗଲେ...

ସୁମିତ୍ରା ମନରେ ଯଦି ଏ ପ୍ରକାର ଚିନ୍ତା ଥିବ ତେବେ ସେ କ୍ଷେତ୍ରରେ ତାକୁ ଅବିଶ୍ୱାସ କରିବାଟା ମୋଟେ ଠିକ୍ ହେବ ନାହିଁ । ରାଜେନ୍ଦ୍ର ଏଥର ବହଳିଆ ଅନ୍ଧାର ଭିତରେ ସ୍ପଷ୍ଟ ଦେଖିଲା ଗେଟ୍‌ର ତାଲାକୁ । ନିର୍ଜୀବ ନିସ୍ତେଜ ହୋଇ ଝୁଲୁଛି । ଯେମିତି ତାର ସମସ୍ତ ଜୀବନୀ ଶକ୍ତି ଲୋପ ପାଉଛି । ରାଜେନ୍ଦ୍ର ନିଜକୁ ସେ ତାଲା ସହିତ ତୁଳନା କଲା । ସେ ବି ତ ସେମିତି ଅନେକ ବେଳୁ ଆକାଶରେ ଝୁଲୁଛି ନିର୍ବାକ ହୋଇ । ତାର କି ଜୀବନୀ ଶକ୍ତି ଅଛି ଯେ ? ତାର ଜୀବନ ଆଉ କଅଣ ? ତାର ସମସ୍ତ ଜୀବନଟା ଯେମିତି ଆଉ କେଉଁ ଅଜଣା ଅଶୁଣା ଚାବିଟା ହାତରେ ଅଟକି ଯାଉଛି ।

ସେ ଦୀର୍ଘଶ୍ୱାସ ପକେଇଲା । ସୁମିତ୍ରା ଏବେ ବି ଆସିନି । ସୁତରାଂ ତାକୁ ଇ ଏବେ ତାଲା ଖୋଲିବାକୁ ହେବ । ତାଲା ଖୋଲିବାକୁ ହେଲେ ତାକୁ ଚାବିଟାକୁ ଖୋଜିବାକୁ ହେବ । ସେ ଚାବିଟା ତାର ଷ୍ଟ୍ରିଫ୍ କେଶ୍ ଭିତରେ ଏବେ କେଉଁ କୋଣରେ ପଡ଼ିଥିବ । ଗୋଟାଏ ଅଲୋଡ଼ା ତଥା ଆବଶ୍ୟକତା ବିହୀନ ଜୀବନଟିଏ ପରି ।

ସେ ଅନେକ ଖୋଜାଖୋଜି କରି ଶେଷରେ ଚାବିଟା ପାଇଲା । ନର୍ଇଁପଡ଼ି ତାଲାଟାକୁ ଖୋଲିଲା । ଅନେକ ହଲେଇ ହଲେଇ ଗେଟର ଦୁଇଫାଳକୁ ସେ ଅଲଗା କଲା । ଏଇ ଏତକ କଲାବେଳେ ଲୁହାରେ କଳଙ୍କି ଲାଗିଥିବା ଗେଟ୍‌ଟା ଯେମିତି କେଁ କଟର କେଁ କଟର କରେ ସେତକ ରାଜେନ୍ଦ୍ରକୁ ଭାରୀ କଷ୍ଟ ଦିଏ । ଏଇ ଗେଟ୍ ଖୋଲିବାଟା ରାଜେନ୍ଦ୍ରପାଇଁ ବଡ଼ କଷ୍ଟକର କଥା । ବଡ ଯନ୍ତ୍ରଣାଦାୟକ । ବଡ଼ ବିରକ୍ତିକର ମଧ । କେତେକାଂଶରେ ଅପମାନ ଜନକ । ସାରା ଦିନ ଅଫିସ୍‌ରେ କାମ କରି କରି ଥକି ପଡ଼ିଥିଲା ବେଳେ ଘରକୁ ଆସି ଗେଟ୍‌ର ତାଲା ଖୋଲି ଭିତରକୁ ପଶି ପୁଣି ଘରର କବାଟରୁ ତାଲା ଖୋଲି ଭିତରକୁ ଗଲେ ଜୀବନ ଯନ୍ତ୍ରଣା ଶହେଗୁଣ ବଢ଼ିଯାଏ । ରୁନ୍ଧି ହୋଇଥିବା କୋଠରି ଭିତରେ ବାୟୁମଣ୍ଡଳଟା ବଡ଼ ଅସହ୍ୟ ଜଣାପଡ଼େ । ସେ ତୁହି ତୁହି ତାକ ଛାଡ଼ି ଝରକା ସବୁ ଖୋଲି ପକାଏ । ତାପରେ ହଠାତ ତାର ମନେହୁଏ ଯେମିତି ପ୍ରବଳ ଶୋଷରେ ତା କଣ୍ଠ ଶୁଖିଯାଉଚି । ସେ ପାଣି ଗିଲାସେ ପିଇବାକୁ ଚାହେଁ । ଆଃ କି କଷ୍ଟ । ସେତକ ମଧ ତାକୁ ନିଜେ କରିବାକୁ ପଡ଼େ । ସେ ଗ୍ଲାସ ବାହାର କରେ ଏବଂ ନିଜେ ଫ୍ରିଜ୍‌ରୁ ବୋତଲ ଆଣି ପାଣି ଢାଳେ ଏବଂ ଢଗ ଢଗ କରି ପିଇଯାଏ ।

ରାଜେନ୍ଦ୍ରକୁ ଅଫିସ୍‌ରେ ସେସବୁ କାମ କରିବାକୁ ପଡ଼େ ନାହିଁ । ସେ ଅଫିସ୍‌ରେ ପହଂଚିବା ପୂର୍ବରୁ ପିଅନ ତା ଅଫିସ୍ ଖୋଲି ଝାଡୁ ମାରି ସଫା ସୁଫି କରି ଓଦା କନାରେ ଟେବୁଲ୍ ଚେୟାର ସବୁ ପୋଛି ଏ.ସି.ଚଲେଇ ଦେଇଥାଏ । ଏପରିକି ସେ ଭିତରକୁ ପଶିବା ବେଳକୁ ପିଅନ ସେ କବାଟଟା ଖୋଲି ଧରେ ଏବଂ ତା ପୂର୍ବରୁ ରାଜେନ୍ଦ୍ର ହାତରୁ ବ୍ରିଫ୍‌କେଶ୍‌ଟା ମଧ ଧରିନିଏ । ପାଣି କିମ୍ବା ଗ୍ଲାସ କଥା ତାକୁ ମୋଟେ ଚିନ୍ତା କରିବାକୁ ପଡ଼େନା । ଥରେ ଗ୍ଲାସରୁ ପାଣି ସରିଗଲେ ଆଉ ଥରେ ମନକୁ ମନ ଭର୍ତ୍ତି ହୋଇ ସେଠି ରହିଯାଏ । ଗ୍ଲାସରୁ କଭରଟା ମଧ ତାକୁ ଉଠେଇବାକୁ ପଡ଼ି ନଥାଏ ।

ରାଜେନ୍ଦ୍ର ଦେଖିଲା ସୁମିତ୍ରା ତଥାପି ଫେରି ନାହିଁ । କଅଣ କରୁଚି ସେ ଏତେବେଳଯାଏ ଅଫିସ୍‌ରେ । ଛଅଟାରେ ଛୁଟି ହେଲେ ଏଠାକୁ ଆସିବାକୁ ୪୫ମିନିଟ୍ ଲାଗିବ ଖୁବ୍ ବେଶିରେ । ସାତଟା ସୁଦ୍ଧା ତ ନିଶ୍ଚୟ ଆସିବାର କଥା । ଏବେ ୭.୧୫ ହେଲାଣି ।

ସୁମିତ୍ରାର ଅଫିସର୍ ଏବେ ବଦଳିଚି ବୋଲି ସେ କହୁଥିଲା । ନୂଆ ଅଫିସର୍ । ଖୁବ୍ ସ୍ମାର୍ଟ । ଗୋଟାଏ ମିନିଟ୍ ସେ ବସନ୍ତିନି କି ଅନ୍ୟମାନଙ୍କୁ ବସିବାକୁ ଦିଅନ୍ତିନି । କିଏ ସେ ଅଫିସର୍ କେଜାଣି । ରାଜେନ୍ଦ୍ର ତାଙ୍କୁ ଏ ଯାଏ ଭେଟିବାକୁ ସମୟ ପାଇନି । ଇଚ୍ଛା ମଧ ହେଉନି । ଯେତେବେଳେ ଇଚ୍ଛା ହୁଏ ସେତେବେଳେ ସେ ତାକୁ ଇଚ୍ଛାକରି ଚାପି ଦେଇଚି ।

ହଠାତ୍ ରାଜେନ୍ଦ୍ରର ଚା' ଦୋକାନ କଥା ମନେପଡ଼ିଲା । ତାର ଇଚ୍ଛା ହେଉଥିଲା ଏଇ ମୁହୂର୍ତ୍ତରେ ଗୋଟାଏ କପ୍ ଗରମ ଚା' ତାକୁ କିଏ ଦିଅନ୍ତା କି ? ସେ ଏବେ ଚା' ଦୋକାନକୁ ଚାଲିଯିବ କି ? କିନ୍ତୁ ସେଠାକୁ ଯିବାକୁ ହେଲେ ତାକୁ ପ୍ରଥମେ ପୋଷାକ ବଦଳେଇବାକୁ

ପଡ଼ିବ । ଏବଂ ତାପରେ ଦୁଇଟା ଜାଗାରେ ତାଲା ବନ୍ଦ କରିବାକୁ ହେବ । ନାଁ ତାଠୁ ଯନ୍ତ୍ରଣା ଦାୟକ କଥା ଆଉ କିଛି ନାହିଁ ।

ତା'ଛଡ଼ା ଅନେକ ଦିନ ଆଗରୁ ଏକଥା ମଧ ଥରେ ଦି ଥର ସେ ଲକ୍ଷ୍ୟ କରିଚି ଯେ ସେ ସଂଧ୍ୟାବେଳେ ଯାଇ ସେଠାରେ ଚା' ପିଇଲେ ସୁମିତ୍ରା ତାକୁ ସାଧାରଣଭାବେ ଗ୍ରହଣ କରିପାରେନା । କାହିଁକି ସେ ଗ୍ରହଣ କରିପାରେନା ! ଚା' ପିଇବାଟାକୁ ସୁମିତ୍ରା ସେଠି ଅସମ୍ମାନଜନକ ମନେକରେ ନା ଆଉ କିଛି-? ସେ କଅଣ ଭାବେ ଯେ ହୁଏତ ରାଜେନ୍ଦ୍ର ଚା' ଖିଆ ବାହାନାରେ ସେଠାକୁ ଯାଇ ସୁମିତ୍ରାର ଓ ସେ ଲଫଙ୍ଗା ଟୋକାର ଗତିବିଧି ଲକ୍ଷ୍ୟ କରେ । ଏବଂ ତାକୁ କହେ ମୁଁ ତୁମକୁ ସୁରକ୍ଷା ଦେବା ଉଦ୍ଦେଶ୍ୟରେ ଆଗେଇ ଆସିଥିଲି । ଅନ୍ଧାର ହେଇ ଆସିଲାଣି କିନା ।

ସତରେ କଅଣ ରାଜେନ୍ଦ୍ର ସୁରକ୍ଷା ଦେବାକୁ ସେଥର ଯାଇଥିଲା । ତା' ମନରେ ଆଉ କିଛି ଧାରଣା ଇଚ୍ଛାକରି ହେଉ ବା ଅନିଚ୍ଛାକରି ହେଉ ଜାଗାମାଡ଼ି ବସି ନଥିଲା ? କାହିଁକି ବେଳେବେଳେ ତା ମନରେ ସୁମିତ୍ରା ପ୍ରତି ଏ ପ୍ରକାର ଭାବନା ଆସୁଚି ?

ଟି.ଭି. ଉପରେ ସୁମିତ୍ରାର ଗୋଟାଏ ବଂଧେଇ ଫଟୋ ଉପରେ ରାଜେନ୍ଦ୍ରର ନଜର ପଡ଼ିଲା । ବିବାହ ପରେ ପରେ ସେମାନେ କୋଣାର୍କ ଯାଇଥିଲେ । ସେଇଠି ସେ ଫଟୋ ଉଠା ହେଇଥିଲା । ପଛପଟେ କୋଣାର୍କର ଅର୍ଦ୍ଧ ଭଗ୍ନ ମନ୍ଦିର । ସେଇ ଅର୍ଦ୍ଧଭଗ୍ନ ମନ୍ଦିରକୁ ପଛରେ ରଖି ଫଟୋ ଉଠେଇବାକୁ ସୁମିତ୍ରା କାହିଁକି ଜିଦ୍ ଧରିଥିଲା କେଜାଣି ! ଯଦିଓ ରାଜେନ୍ଦ୍ର ଚାହିଁଥିଲା ପଛପଟେ ଝାଉଁବଣ ରହିବା ଉଚିତ । ରୋମାଣ୍ଟିକତା ବେଶ ଫୁଟି ଉଠି ଥାଆନ୍ତା । ରାଜେନ୍ଦ୍ରକୁ କୋଣାର୍କର ଭଗ୍ନସ୍ତୁପର କାରୁକାର୍ଯ୍ୟ ଅପେକ୍ଷା ଜୀବନ୍ତ ତଥା ପ୍ରଚୁର ସବୁଜିମାରେ ଭରିଯାଇଥିବା ଝାଉଁବଣ ଖୁବ୍ ଭଲଲାଗେ । ସେ ବଣ ଭିତରେ ସେ ହଜି ଯିବାକୁ ଚାହେଁ ।

ସୁମିତ୍ରାର ଇଚ୍ଛା ଉପରେ ଅଙ୍କୁଶ ଲଗେଇବାକୁ ସେ ଚାହିଁ ନ ଥିଲା ସେ ଦିନ । କିନ୍ତୁ ତା'ର ନିଶ୍ଚୟ ଇଚ୍ଛା ହେଉଥିଲା ଯେ ସୁମିତ୍ରା ତାର ସବୁ କଥା ହିଁ ମାନନ୍ତା । ତା ପାଟିରୁ କଥା ବାହାରିବା ପୂର୍ବରୁ ସେ ତାର ଦୁଇ ହାତ ପାତି ତାକୁ ଉଠେଇ ନିଅନ୍ତା ଏବଂ ସଂପୂର୍ଣ୍ଣ ସମର୍ପଣର ଆବହ ସଂଗୀତରେ ନିଜକୁ ହଜେଇ ଦିଅନ୍ତା । ରାଜେନ୍ଦ୍ରର ପ୍ରେମର ପରିଧି ଭିତରେ ସୁମିତ୍ରା ଗୋଟାଏ ଉଡ଼ନ୍ତା ପ୍ରଜାପତି ପରି ଘୁରି ବୁଲନ୍ତା । ତାର ଚିତ୍ରିତ ପାଖୁଡ଼ାରେ ସ୍ପର୍ଶ ଦେବା ମାତ୍ରେ ସେ ଉଡ଼ି ଯାଉଥାଆନ୍ତା । ହୁଏତ ପୁଣି ଥରେ ତାକୁ ଛୁଅନ୍ତା ଓ ପୁଣି ସେ ଉଡ଼ି ଯାଆନ୍ତା ।

କିନ୍ତୁ ହାୟ ସେ କଥା ହୁଏନାହିଁ । ରାଜେନ୍ଦ୍ର ରାଜେନ୍ଦ୍ର ଜାଗାରେ ଏବଂ ସୁମିତ୍ରା ସୁମିତ୍ରା ଜାଗାରେ ରହିଯାଆନ୍ତି । ଖାଲି କେବଳ ଦୁଇଟି ମେରୁକୁ ନାଁକୁ ମାତ୍ର ସଂଯୋଗ କରୁଥିବା ଗୋଟିଏ କାଳ୍ପନିକ ମେରୁଦଣ୍ଡ ପରି ସଂପର୍କକୁ ସମ୍ବଳକରି ।

ସୁମିତ୍ରା ସଂଜରେ ଘରକୁ ଫେରେ । ନିଜ କାମରେ ବ୍ୟସ୍ତଥାଏ । ଯନ୍ତ୍ରଚାଳିତ ପରି ଗୋଡ଼ ଘୋଷାରି ଘୋଷାରି ରୋଷେଇ ଘରକୁ ଯାଏ । ଆଉ ସେଇ ସମୟତକ ରାଜେନ୍ଦ୍ର ଟିଭି ଆଗରେ ବସିଯାଏ । ହୁଏତ ସେ ଜାଣେନା ସେ କଅଣ ଦେଖୁଚି ।

ସବୁଠି ଗୋଟାଏ ବ୍ୟବଧାନ । ଗୋଟାଏ ସମୁଦ୍ରର ବ୍ୟବଧାନ । ବ୍ୟବଧାନର ହିମାଳୟ ଦୁଇକୁ ଏକରେ ପରିଣତ କରି ଦେଇଚି । ତାପରେ ହୁଏତ ଅଂଧାର ବି ଆସେ । ସେ ଅଂଧାରର ଆବର୍ତ୍ତ ଭିତରେ ହୁଏତ କେତେବେଳେ ରାଜେନ୍ଦ୍ର ସେ ଚିତ୍ରିତ ପ୍ରଜାପତି ପାଇଁ ହାତ ବଢ଼ାଏ । ସେତେବେଳେ ତାର ଯେମିତି ମନେହୁଏ ପ୍ରଜାପତିଟି ପ୍ରାଣହୀନ ହେଇ ପଡ଼ିଚି । ସେ ବାଗୟାର ଉଡିଯାଉ ନାହିଁ କି ରାଜେନ୍ଦ୍ରକୁ ପ୍ରଲୋଭିତ କରିବାକୁ ଚେଷ୍ଟା ମଧ କରୁନାହିଁ ।

ରାଜେନ୍ଦ୍ରର ହୃଦୟ ହାହାକାର କରି ଉଠେ । ବିଳପି ଉଠେ ଅତି କରୁଣ ଭାବେ । ସେ କାରୁଣ୍ୟର ଉର୍ଦ୍ଧ୍ୱମୁଖୀ ଉଚ୍ଛ୍ୱାସଟିଏ ଯେମିତି ବାୟୁମଣ୍ଡଳରେ ମିଶିଯାଉଚି । ସୁମିତ୍ରା ତଥାପି ଫେରିନାହିଁ ।



ତୀରତରଙ୍ଗ- ୧୯୯୯

# ମୁଁ ଓ ସେ ଚଢ଼େଇ

ସବୁଦିନ ପରି ସେଦିନ ମଧ ମୁଁ ବଗିଚାରେ ବୁଲୁଥିଲି । ମୋ ବଗିଚାଟି ମୋର ପ୍ରାଣ । ଜାତି ଜାତିକା ଫୁଲ ଫଳ ଓ ଗଛରେ ଭର୍ତ୍ତି । ତଳେ ସୁନ୍ଦର ଲନ୍ । କଅଁଳ ଓ ବହଳ ଘାସରେ ମୋର ଖୁବ୍ ସଉକ୍ । ସବୁ ଜାତିର ଫୁଲ ମୋତେ ବେଶ ଆନନ୍ଦ ଦିଏ । ସେ ସବୁ ମୋ ନିଜ ହାତରେ ତିଆରି । ମୋର ଗୋଟାଏ ଅଭ୍ୟାସ, ବରଂ ଅଭ୍ୟାସ ନକହି ତାକୁ ସଉକ୍ କୁହାଯାଇପାରେ, ପ୍ରତିଦିନ କିଛି ନା କିଛି ନୂଆ ଗଛ ରୋପିବା, ରୋପିଥିବା ଗଛ ପାଖକୁ ଯାଇ ତାକୁ ଥରେ ଦେଖିବା, ତା ମୂଳ ଖୋସେଇବା, ନୂଆ ମାଟି ଓ ସାର ତା ମୂଳରେ ଦେବା, ଅନାବନା ଘାସ ବାଛି ଦେବା, ତା ଫୁଲ ଓ କଅଁଳି ଆସୁଥିବା ପତ୍ରକୁ ଟିକିଏ ଆଉଁସି ଦେବା ଏବଂ ବାରମ୍ବାର ତାକୁ ମନଭରି ଦେଖିବା ମୋର ଗୋଟାଏ ଦୈନନ୍ଦିନ କାମରେ ପରିଣତ ହେଇଯାଇଥାଏ ।

ବଗିଚାଟି ଅପେକ୍ଷାକୃତ ବଡ଼ ଏବଂ ଘଞ୍ଚ ଗଛ ପତ୍ରରେ ଭର୍ତ୍ତି । ପେନ୍ଥା ପେନ୍ଥା ଫୁଲରେ ସବୁ ସବୁ ଡାଳଗିମାନ ଅନେକ ସମୟରେ ତଳକୁ ନଇଁ ପଡ଼େ । ବେଳେବେଳେ ମାଟିରେ ବି ଲୋଟିପଡ଼େ ।

ମୁଁ ଅନେକ ସମୟରେ ଦେଖିଚି ସେଠାକୁ ଜାତି ଜାତିକା ଚଢ଼େଇ ମଧ ଆସନ୍ତି । ପ୍ରତିଦିନ ସକାଳେ ଓ ସନ୍ଧ୍ୟାରେ ସେମାନଙ୍କ ମେଳଣ ଓ ସଙ୍ଗୀତ ଆସର ମୁଁ କଅଁଳ ଘାସ ଉପରେ ବସି କିମ୍ବା କ୍ରୋଟନ ଗଛର ଆଢୁଆଳରେ ବସି ବେଶ ଉପଭୋଗ କରେଁ । ସେତେବେଳେ ରଙ୍ଗ ବେରଙ୍ଗର ଚଢ଼େଇ ସହିତ ଫୁଲର ମହକ ଯେ କୌଣସି ଲୋକକୁ ମତୁଆଲା କରିଦିଏ ।

ମୁଁ ଠିକ୍ ସେତିକିବେଳେ ବଗିଚା ଭିତରେ ପହଞ୍ଚଯାଏଁ ଏବଂ ଗଛପତ୍ରର ଗହଳି ଭିତରେ ଲୁଚିଯାଏଁ । ବେଶ୍ କିଛି ସମୟ ପାଇଁ ଚଢ଼େଇମାନଙ୍କର ମିଳିତ ବୃନ୍ଦଗାନ ମୋତେ ବଗିଚା ଭିତରେ ଆତ୍ମହରା କରିଦିଏ ।

ଦିନେ ହଠାତ୍ ଏମିତି ଘଟଣାଟିଏ ଘଟିବ ବୋଲି ମୁଁ ଆଶା କରିନଥିଲି ।

ରାତି ପାହି ଆସୁଥାଏ । ମୁହଁକୁ ମୁହଁ ଦେଖି ହେଉଥାଏ କିନ୍ତୁ ଚିହ୍ନି ହେଉ ନଥାଏ । ବେଳେବେଳେ ଚିହ୍ନି ହେଉଥାଏ କିନ୍ତୁ ଭଲ ଭାବରେ ଦେଖି ହେଉ ନଥାଏ । ମୁଁ ଲୁଚି ଲୁଚି ଯାଇ ଗୋଟାଏ ଗଛର ପଛପଟେ ସବୁଜ ଘାସ ଉପରେ ବୁପକିନା ବସି ପଡ଼ିଲି । ସେଇ ଗଛ ଉପରେ ପକ୍ଷୀମାନଙ୍କର ସଙ୍ଗୀତ ଆସର ଜମେ ଠିକ୍ ସେଇ ସମୟରେ ।

ହଁ କହି ରଖେଁ- ମୁଁ ଚଢ଼େଇମାନଙ୍କର ଭାଷା ବୁଝି ପାରେନା କିନ୍ତୁ ସେମାନଙ୍କ ସଙ୍ଗୀତକୁ ପ୍ରାଣ ଭରି ଉପଭୋଗ କରେ । କେହି ଜଣେ କବି ଥରେ କହିଥିବାର ମନେପଡୁଛି, ନାରୀମାନଙ୍କ ପରି ଚଢ଼େଇମାନଙ୍କ ଭାଷା ମଧ ଦୁର୍ବୋଧ, ତାକୁ ଶୁଣି ହୁଏ, ବୁଝିହୁଏନା ।

ସୂର୍ଯ୍ୟୋଦୟର ଯଥେଷ୍ଟ ପୂର୍ବରୁ ଏବଂ ଠିକ୍ ପୃଥିବୀରୁ ଅନ୍ଧାର ଆସ୍ତେ ଆସ୍ତେ ଦୂରୀଭୂତ ହେଉଥିବା ବେଳେ, ମୋର ସେ ବଗିଚା ଭିତରେ ଗଛପତ୍ରର ଆଢୁଆଳରେ ବସି ପକ୍ଷୀମାନେ ଯେଉଁ କୋରସ୍ ଆରମ୍ଭ କରନ୍ତି ତାହା ପୃଥିବୀର ସୃଷ୍ଟିକର୍ତ୍ତା ଈଶ୍ୱରଙ୍କ ଉଦ୍ଦେଶ୍ୟରେ, କି ସମସ୍ତ ମଣିଷ ସମାଜର ମଙ୍ଗଳ କାମନା ଉଦ୍ଦେଶ୍ୟରେ, ଗୋଟାଏ ମାଙ୍ଗଳିକ, କି ତାହା ସେମାନଙ୍କର ନିଜ ଉଦ୍ଦେଶ୍ୟରେ, ନିଜ ପରିବାରର ମଙ୍ଗଳକାମନା କରୁଥିବା ଏକ ବ୍ୟକ୍ତିବାଦୀ ସଙ୍ଗୀତ ସେ କଥା ମୁଁ ମୋଟେ କହିପାରିବିନି । ମୁଁ ତ ଆଗରୁ କହିଚି ମୁଁ ଅର୍ଥ ମୋଟେ ବୁଝେନା ।

ମୁଁ ଲନ୍ ଉପରେ ବସି ପଡ଼ିବା ମାତ୍ରେ ହିଁ ମୋ ପାଖକୁ ଲାଗି ଖୁବ ଶୀଘ୍ର ବଢ଼ି ଆସୁଥିବା ଗୋଟିଏ ଫୁଲଗଛର ଡାଳରୁ ଚିତ୍ରିତ ଚଢ଼େଇଟିଏ ଚମକି ପଡ଼ିଲା ପରି ହେଲା ଏବଂ ପର ମେଲେଇ ଆଉ ଟିକିଏ ଉପର ଡ଼ାଳକୁ ଉଡ଼ିଯାଇ ମୋତେ ଅନେଇଲା । ସେ ଏମିତି ବେକ ଭାଙ୍ଗି ମୋତେ ଦେଖିଲା ଯେ ମୋର ମନେହେଲା ଅନେକ ଦିନର ପୁରୁଣା ପରିଚିତ ଝିଅଟିଏ ମୋତେ ଦେଖୁଚି ଓ ଚିହ୍ନିବାକୁ ଚେଷ୍ଟା କରୁଚି ।

ମୁଁ ତାର ଦେଖିବାରେ ବିମୋହିତ ହେଇପଡ଼ିଲି । ମୋତେ ଲାଗିଲା ମୁଁ କେମିତି ଧୀରେ ଧୀରେ ସ୍ୱପ୍ନାଚ୍ଛନ୍ନ ହେଇପଡୁଚି । ଆଗରୁ କୋଉଠି ଦେଖିଚି ଏ ଚଢ଼େଇକୁ ? କୋଉଠି ? କେବେ ? କାହିଁ ମନେପଡୁନିତ ? କିନ୍ତୁ ତାର ଦେଖିବାରେ ଏତେ ମାଦକତା ଏତେ ଆତ୍ମୀୟତା ଥିଲା ଯେ ସେଥିରେ ମୁଁ ଅକାରଣଟାରେ ସ୍ଥିର ନିଶ୍ଚିତ ହେଇ ଯାଉଥିଲି, ମୁଁ ଯେମିତି ତାକୁ ଅନେକ ଦିନୁ ଜାଣେଁ । ପ୍ରକୃତରେ ମୁଁ ତାକୁ ଜାଣି ନଥିଲି ।

ଅନ୍ତରଙ୍ଗତା ଯେତେବେଳେ ଅତି ବେଶି ହେଇଯାଏ ସେତେବେଳେ ଭୁଲଟା ବି ଠିକ୍ ଭଳିଆ ଜଣାପଡ଼େ । ଅସ୍ପଷ୍ଟଟାବି ବେଶ ସ୍ପଷ୍ଟ ଭଳି ଜଣାପଡ଼େ । କିଛି ନଥିବା ଭିତରେ ଗୋଟାଏ 'ଅଛି'ର ଆଭାସ ମିଳେ । ମହାଶୂନ୍ୟ ଭିତରେ ଅସ୍ତିତ୍ୱ ଦେଖାଯାଏ ।

ଚଢ଼େଇଟି ତାର ଦୁଇପର ମେଲିଦେଲାଏବଂ ଡାଳଟି ଅତ୍ୟନ୍ତ କ୍ଷୁଦ୍ର ହେଲେ ମଧ ତାଉପରେ ସଜାଡ଼ି ହେଇ ବସିଲା ।

ମୁଁ ଭାବିଲି ସେ ବୋଧେ ଉଡ଼ିଯିବାର ଉପକ୍ରମ କରୁଛି । କିମ୍ବା ହୁଏତ ଭାବୁଚି ମୋର ଦୃଷ୍ଟି ଏଡ଼ାଇବା ପାଇଁ ଆଉ କୋଉ ଗଛକୁ ପଳେଇବ । ଅନେକ ପରିଚୟ ପରେ ଯଦି ଦୀର୍ଘ ବ୍ୟବଧାନଟିଏ ସୃଷ୍ଟି ହେଇଯାଏ, ପରିସ୍ଥିତିର ଚାପରେ ପଡ଼ି ତାକୁ ଏଡ଼ାଇ ଯିବା ପାଇଁ ଏମିତି ଆତ୍ମରକ୍ଷାଟିଏ ଅବଶ୍ୟ ବେଳେବେଳେ ଆବଶ୍ୟକ ହେଇଥାଏ । ସେ ଅବସ୍ଥାକୁ ସହ୍ୟ କରିବା ଛଡ଼ା ମଣିଷ ପକ୍ଷେ ସେତେବେଳେ ଅନ୍ୟ ପନ୍ଥା ନଥାଏ ।

"ତୁ ଉଡ଼ି ପଳେଇବୁ କି ?" ମୋ ଅଲକ୍ଷ୍ୟରେ ମୋ ପାଟିରୁ କଥାପଦେ ବାହାରି ଆସିଲା ।

ସେ କିଛୁ ଉତ୍ତର ଦେଲା । ଚଢ଼େଇ ଯେ ଉତ୍ତର ଦିଏ ସେ କଥା ମୁଁ ଜାଣି ନଥିଲି । ହଁ, ପୁରାକାଳରେ କିଛି ଗପରେ ଅବଶ୍ୟ ମୁଁ ଶୁଣିଛି ଯେ ପଶୁ ପକ୍ଷୀମାନେ କଥାବାର୍ତ୍ତା କରନ୍ତି । ସେତେବେଳେ ମୋତେ କଥାଗୁଡ଼ାକ ବେଶ ମଜା ଲାଗୁଥାଏ ।

ତେବେ ସେଦିନ ସେ ଚଢ଼େଇଟି ମୋତେ ଯାହା କହିଲା ସେଥିରେ ମୁଁ ଆଶ୍ଚର୍ଯ୍ୟ ହୋଇଗଲି ।

ତୁମେ ଚାହୁଁଛ କି ମୁଁ ଏଠୁ ଉଡ଼ି ପଳାଏଁ ? ସେ କହିଲା । ନା, ମୋଟେ ନୁହେଁ । ବରଂ ଚାହିଁବି ତୁ ଏଇଠି ବରାବର ରହ । ମୁଁ ବରଂ ଏଥିରେ ଖୁସି ହେବି ।

ମୁଁ ବରାବର ରହିବି ? ଏଇ ବଗିଚାରେ ? ଏଇ ଗଛ ଡ଼ାଳରେ ?

ମୁଁ ଏଥର ଟିକିଏ ଅପ୍ରସ୍ତୁତ ହେଲାପରି ହେଲି । ମୁଁ କି ଉତ୍ତର ତାକୁ ଦେବି ? କହିଦେବି, ହଁ ତୁ ରହ । ଯେତେଦିନ ଇଚ୍ଛା ରହ ।

ସତରେ ତା ପ୍ରଶ୍ନଟା ମୋତେ ଅଡୁଆରେ ପକାଇଦେଲା । ମୁଁ ଅନେକ ଚିନ୍ତା କରି କହିଲି ତୁ ଏଇଠି ରହିଲେ ତୋର କିଛି ଅସୁବିଧା ହେବ ?

"ମୋରତ ପୁଣି ଗୋଟାଏ ଘର ଅଛି ?"

ଏଇ କଥା ପଦକୁ ହିଁ ମୁଁ ଭୟ କରୁଥିଲି । ଏମିତି ଉତ୍ତରଟିଏ ଯଦି ତା'ଠୁ ମିଳେ ତେବେ ? ମୁଁ କଅଣ କହିବି ତାକୁ ? ସେ ମୋତେ ସ୍ୱାର୍ଥପର ବୋଲି ଭାବିବ ନାହିଁକି ? ଶେଷରେ ସେଇ କଥା ହିଁ ତା'ଠାରୁ ଶୁଣିବାକୁ ମିଳିଲା ।

ମୁଁ ଦୁଃଖ ପ୍ରକାଶ କଲି । କହିଲି, "ଠିକ୍ ଅଛି ତୁ ତେବେ ଉଡ଼ିଯା ।"

ନା, ଯିବି ନାହିଁ ।

କାହିଁକି ?

ତୁମଠୁ କଥା ଶୁଣିବାକୁ ଭଲ ଲାଗୁଛି । ସେ କହିଲା ସେମିତି ବେକ ବଙ୍କେଇ ।

ତାର ବେକଟା ଦର୍ଶନୀୟ ଥିଲା । ଯେ ବି ଦେଖିବ ଖୁସି ହେଇଯିବ । ନା ମୋର ଏମିତି କହିବା ମଧ ଉଚିତ ନୁହେଁ । ମୋର ମନେହୁଏ ଯାହା ମୋ ଆଖିରେ ସୁନ୍ଦର ତାକୁ ଆଉ କେହି ନଦେଖୁ । କେବଳ ମୁଁ ଦେଖିବି । ମୁଁ ତେଣୁ ତାର ସେ ବେକଟାକୁ ଦେଖୁ ଦେଖୁ ତା କଥାର ଉତ୍ତରରେ କହିଲି, ଆଃ ତାର ବା କଅଣ ମୂଲ୍ୟ ଅଛି ? ସେତକତ ତୁ ଅନ୍ୟ କେଉଁଠି ବି ପାଇ ପାରିବୁ ।

"ନା ସବୁଠି ସବୁ କଥା ମିଳେନା ।" ତା ସ୍ୱରରେ ମୁଁ ଯଥେଷ୍ଟ ଆତ୍ମୀୟତା ଅନୁଭବ କରୁଥିଲି ।

ମୁଁ ଚୁପ ହୋଇଗଲି । ସତ କହିବାକୁ ଗଲେ ତା ପରେ ମୁଁ ତାକୁ ଆଉ କଅଣ କହିବାକୁ ଚାହୁଁଥିଲି ସେ କଥା ନିଜେ ମଧ ଭାବି ପାରୁ ନଥିଲି । ବେଳେବେଳେ ମଣିଷ ଏମିତି ପ୍ରଶ୍ନର ସାମନା ସାମନି ହୁଏ ଯାର କୌଣସି ଉତ୍ତର ଖୋଜିଲେ ବି ମିଳେନା ।

ତୁମେ ଚୁପ ହୋଇଗଲ ଯେ ? ସେ ପଚାରିଲା ।

ଉତ୍ତର ନଥିଲେ ଚୁପ ରହିବା ଛଡ଼ା ଆଉ ଉପାୟ କଅଣ ଅଛି ? ମୁଁ କହିଲି ଏବଂ ତଳକୁ ଦେଖିଲି । କେମିତି ଗୋଟେ ଅପରାଧବୋଧ ମୋତେ ଆବୋରି ପକାଉଥିଲା ।

ସେ ଉଠି ଆସିଲା ଏବଂ ମୋ କାନ୍ଧ ଉପରେ ବସି ପଡ଼ିଲା ମୁଁ ତା ସାମନାରେ ମୋ ଡାହାଣ ହାତ ପାତି ଦେଲି ।

ସେ ଏଥର ମୋ ପାପୁଲିକୁ ଆସିଗଲା ।

ଏବେ ତୁ ତ ମୋର ଏକଦମ ପାଖରେ ।

କିନ୍ତୁ ତଥାପି ଭୟ ଅଛି ।

ଭୟ ? କାହିଁକି ?

ଚଢ଼େଇମାନେ ମଣିଷକୁ ଭୟ କରନ୍ତି ।

କିନ୍ତୁ କାହିଁକି ?

ମଣିଷମାନେ ଚଢ଼େଇକୁ ଦେଖିଲାମାତ୍ରେ ତାକୁ ପଞ୍ଜୁରୀରେ ପୁରେଇ ଦିଅନ୍ତି ।

ଯେ ହେତୁ ସେମାନେ ତାକୁ ବହୁତ ଭଲ ପାଆନ୍ତି । ଯିଏ ଯେତେ ଜଣକୁ ଭଲ ପାଏ ସେ ସେତିକି ତାକୁ ଆପଣାର କରିବାକୁ ଚେଷ୍ଟା କରେ । ତେଣୁ ପଞ୍ଜୁରୀର ଅନ୍ୟ ନାମ ଭଲ ପାଇବା । ସବୁବେଳେ ଅତି ନିକଟରୁ ପାଇବାକୁ ହେଲେ ଭଲପାଇବାର ପଞ୍ଜୁରୀଟିକୁ ପାଖରେ ରଖିବା ଛଡ଼ା ଆଉ ଉପାୟ କଅଣ ଅଛି ?

କିନ୍ତୁ ଏ କଥା ମଧ ଭୁଲିଯିବା ଉଚିତ ନୁହେଁ ଯେ ଚଢ଼େଇଟା ସବୁବେଳେ ଚଢ଼େଇ । ସେ ମଣିଷ ପରି ଆଜନ୍ମ ମୁକ୍ତ । ତାକୁ ପାଖରେ ରଖାଯାଇପାରେ ଏବଂ ସମଗ୍ର ପୃଥିବୀଟା ତାର ଘର, ତାର ଗତି ଯେମିତି ବ୍ୟାହତ ହେବା ଉଚିତ ନୁହେଁ ତାର ପ୍ରେମ ଓ ପ୍ରତ୍ୟାଶା ମଧ ସେମିତି କେବେ ବିଡ଼ମ୍ବିତ ହେବା ଉଚିତ ନୁହେଁ ।

କିନ୍ତୁ ଉଡ଼ିବା ଯାହାର ଅଭ୍ୟାସ ତାକୁ ଆଉ କୋଉ ଉପାୟରେ ପାଖରେ ରଖି ହେବ ? ପାଖରେ ରଖି ନପାରିଲେ ଭଲ ପାଇବାରେ ଆଞ୍ଚ ଆସେ । ତାହା ସଂଶୟ ଭିତରକୁ ଆସିଯାଏ ।

ମୋ ପାଖକୁ ଲାଗିଥିବା ଗୋଟିଏ ଫୁଲ ଗଛର ଡାଳରେ ସେ ଯାଇ ବସିଲା ଏବଂ କହିଲା ମୋ ଉପରେ ବିଶ୍ୱାସ ରଖି ହେବ ନାହିଁ ? ମୁଁ ବିଶ୍ୱାସ ଭାଜନ ହେଇ ପାରିବିନି ? ସେତକ ଆସ୍ଥା ମୋ ଉପରେ ନାହିଁ ?

ମୁଁ ପୁଣି ଥରେ ଚୁପ ହେଇଗଲି । ଭାବିଲି କହି ଦେବାକୁ ଯେଉଁ ଦିନଠୁ ସୃଷ୍ଟି ଆରମ୍ଭ ହେଲାଣି, ଯୋଉ ଦିନଠୁ ମଣିଷ ଓ ଚଢ଼େଇ ଭିତରେ ସମ୍ପର୍କ ସ୍ଥାପିତ ହେଲାଣି, ସେମାନେ ପରସ୍ପରକୁ ଭଲ ପାଇଲେଣି । ସେତେବେଳେ ସେଇ ଦିନଠୁ କାହିଁକି ସମାଜ /ମନୁଷ୍ୟ ତା ଉପରେ ଆସ୍ଥା ସ୍ଥାପନ କରି ନାହିଁ । କାହିଁକି ତା ପାଇଁ ପଞ୍ଜୁରୀଟିଏ ତିଆରି ହେଉଛି ?

କିନ୍ତୁ ମୁଁ ସେ କଥା ତାକୁ କହିପାରିଲିନି । ମୁଁ ତା ଠାରେ ଏତେ କଠୋର ହେବାକୁ ଚାହୁଁନଥିଲି । କାରଣ ମୁଁ ମଣିଷ, ମୁଁ ଚଢ଼େଇର ସ୍ୱାଧୀନତାରେ ବିଶ୍ୱାସ କରେ ବୋଲି କହେଁ । ତା ସତ୍ତ୍ୱେ ତାକୁ ପଞ୍ଜୁରୀରେ ଆବଦ୍ଧ କରି ରଖିଦିଏ । ତାର ସ୍ୱାଧୀନତା ଉପରେ ମୁଁ ଆସ୍ଥା ସ୍ଥାପନ କରିପାରେ ନାହିଁ ବୋଲି ତା ପାଇଁ ପଞ୍ଜୁରୀଟିଏ ତିଆରି କରେଁ । ତେଣୁ ପଞ୍ଜୁରୀଟିକୁ ମଣିଷ ପକ୍ଷୀକୁ ଭଲପାଇବାର ପ୍ରତୀକ ବୋଲି ବିଚାର ନକରି ତା ପ୍ରତି ଥିବା ଅନାସ୍ଥାର ଚିହ୍ନ ବୋଲି ବିଚାର କରାଯାଇପାରେ । ମଣିଷର ସ୍ୱାର୍ଥପରତାର ନମୁନା ବୋଲି ଗ୍ରହଣ କରାଯାଇପାରେ ।

ମୁଁ ମୋ ନିଜ ପାଇଁ ପଞ୍ଜୁରୀଟିଏ ତିଆରି କରିବା କଥା ଚିନ୍ତା କରୁନଥିବାବେଳେ ତା ପାଇଁ କାହିଁକି ?

ମୁଁ ଚୁପ୍ ହେଇଯିବାର ଦେଖି ସେ କହିଲା ପ୍ରତ୍ୟେକ ଜୀବନର ଗତି ଅଛି । ଗତି ହିଁ ଜୀବନର ଲକ୍ଷଣ । ଜୀବନ ଥିଲେ ଗତି ଅବଶ୍ୟମ୍ଭାବି । ମୋର ଉଡିବା ହିଁ ଗତି । ମୁଁ ଯଦି ଉଡ଼ି ପାରୁ ନଥାଆନ୍ତି, ଗତିହୀନ ହେଇ ଥାଆନ୍ତି, ତେବେ ତୁମେ ମୋତେ ଭଲ ପାଉଥାଆନ୍ତ କି ? ଏବଂ ମୋର ସେଇ ଉଡ଼ିବାପଣ ତୁମ ଓ ମୋ ଭିତରେ ଗୋଟାଏ ଅଦମ୍ୟ ଆକର୍ଷଣ ସୃଷ୍ଟି କରେ । ତାହା ହିଁ ଆମକୁ ଏକତ୍ର ବାନ୍ଧି ରଖେ । ଆମେ ଅଲଗା ଥାଇ ମଧ ଅଲଗା ନୁହେଁ । ଏହା ହିଁ ସୃଷ୍ଟିର ବୈଚିତ୍ର୍ୟ । ତୁମେ ଅସ୍ୱୀକାର କରିବ ?

କ୍ଷୁଦ୍ର ଚଢ଼େଇଟି ଭିତରେ ଏତେ କଥା ଅଛି ବୋଲି ଜାଣି ନଥିଲି । ମୁଁ ଏ ଯାଏ ଖାଲି ଚଢ଼େଇଟିକୁ ଦେଖି ତାକୁ ଭଲ ପାଇ ଆସୁଥିଲି । ତାକୁ ଖାଲି ଥରେ ଦେଖି ଦେଲେ, ତା ପାଟିରୁ ପଦେ କଥା ଶୁଣି ଦେଲେ ମୁଁ ମନେମନେ ଆତ୍ମତୃପ୍ତି ଲାଭ କରୁଥିଲି । ହୁଏତ ତାକୁ ଏକାନ୍ତ ନିଜର କରିବାକୁ ମୋ ଭିତରେ ଗୋଟାଏ ସ୍ୱାର୍ଥପର ଇଚ୍ଛା ସବୁବେଳେ ମୁଣ୍ଡ ଟେକୁଥାଏ ।

ମୁଁ ଆଉ ଥରେ ମୋର ଡାହାଣ ହାତର ପାପୁଲି ଦେଖେଇ ଦେଲି ଏବଂ ନିମନ୍ତ୍ରଣ କରିବା ଭଙ୍ଗୀରେ କହିଲି ଆସୁନୁ ? ଆ । ସେ ଗଛର ଡ଼ାଳ ଓ ଏ ହାତର ପାପୁଲି ଏ ଦୁଇଟିରୁ କୋଉଟା ତୋତେ ବେଶୀ ଭଲ ଲାଗେ ?

ମୋ ପାଇଁ ଦୁଇଟି ଯାକ ସମାନ । ମୁଁ କାହାକୁ ଛାଡ଼ିପାରିବି ? ଏ ଦୁଇଟି ହିଁ ମୋ ପାଇଁ ଆବଶ୍ୟକତା, ମୁଁ କାହାକୁ ବଡ଼ ସାନ କରିପାରିବି ? ଗୋଟିଏ ପ୍ରକୃତି, ମୁଁ ଯେଉଁଠି ବଞ୍ଚେ ଓ ଅନ୍ୟଟି ହେଲା ମୋର ପ୍ରାଣ । ମୁଁ କ'ଣ ତାକୁ ଛାଡ଼ି ରହିପାରିବି ?

ମୋ ହାତ ସେମିତି ଖୋଲା ଥିଲା । ମୋ ଭିତରେ ଥିବା ଭଲ ପାଇବାର ସ୍ୱାର୍ଥପରତା ଯେତେଦିନ ଯାଏ ମୋତେ କାକୁସ୍ଥ କରୁଥିବ ସେତେଦିନ ଯାଏ ମୋତେ ଅପେକ୍ଷା କରିବାକୁ ପଡ଼ିବ । ସେଥିରୁ ମୋର ବା ମୁକ୍ତି କାହିଁ ?



ସୁଲେଖା-୨୦୦୦

# ବାଘ

ବାଘ ଗୋଟିଏ ଜଙ୍ଗଲର ପ୍ରାଣୀ । ସେ ଜଙ୍ଗଲରେ ଥାଏ । ତା'ର ଆଚାର ବ୍ୟବହାର ପଶୁ ପରି ହେବା ସ୍ୱାଭାବିକ । ତାର ଚରିତ୍ର ମଧ ଆରଣ୍ୟକ । ସେ ଜଙ୍ଗଲ ଭିତରେ ବାସ କରୁଥିବାରୁ ଏବଂ ସେ ମଣିଷ ଜଗତଠାରୁ ଅଲଗା ହୋଇ ରହୁଥିବାରୁ ତାର ଜୀବନକାଳ ଭିତରେ ତାର ସେଇ ଆଦିମ ପ୍ରବୃତ୍ତି, ଆଚାରବ୍ୟବହାରରେ କେବେବି ପରିବର୍ତ୍ତନ- ଆସିପାରେନା ।

ବାଘ ସେଇଥି ପାଇଁ ହିଂସ୍ର ବନିଯାଏ । ହିଂସ୍ରତା ହିଁ ତାର ସ୍ୱଭାବ । କ୍ରୁରତା ତାର ସାଧାରଣ ଚରିତ୍ର । ତାହାହିଁ ତାର ମୂଳପିଣ୍ଡ । ସେଇ ପ୍ରବୃତ୍ତିକୁ ଛାଡ଼ିଦେଲେ ବାଘଟି ତାର ବାଘପଣିଆ ହରେଇ ବସେ ।

ଏହାହିଁ ମୋଟାମୋଟି ଗୋଟିଏ ବାଘର ଚରିତ୍ର ।

ଅମିତ ମନା କରିପାରିଲା ନାହିଁ । ସେ ଚିଠିଟାକୁ ଦେଖିଲା, ପଢ଼ିଲା । ତାର ପ୍ରତ୍ୟେକ ଶବ୍ଦକୁ, ଧାଡ଼ିକୁ ଏବଂ ପାରାଗ୍ରାଫ୍‌କୁ ଅତି ମନଯୋଗ ସହକାରେ ପଢ଼ିଲା, ତାକୁ ବୁଝିଲା ଏବଂ ତା'ପରେ ସ୍ଥିର କଲା ଯେ ନା ସେ ଆଉ ମନା କରିପାରିବ ନାହିଁ । ଉଚିତ୍ ମଧ ନୁହେଁ । ମନା କଲେ ସେ ଅପର୍ଣ୍ଣା ପ୍ରତି ଅନ୍ୟାୟ କରିବ । ସେ ତା' ପ୍ରତି ଅବହେଳା କରୁଚି ଅଭିଯୋଗରେ ଅଭିଯୁକ୍ତ ହେବ ଏବଂ ତାର ଭବିଷ୍ୟତ ପ୍ରତି ଏକ ବାଧକ ହୋଇ ଛିଡ଼ା ହେବ-ଚିରଦିନକୁ

କାହିଁକି କେଜାଣି ଅମିତ ଅନେକ ଦିନୁ ଅପର୍ଣ୍ଣାକୁ ଦିଲ୍ଲୀ ଯାଇ ତାର ରିସର୍ଚ୍ଚ କାମର ପ୍ରାୟତଃ ସରିଆସିଥିବା ଅଂଶକୁ ଶେଷ କରିବାକୁ ଅନେକ ଅସୁବିଧାର ଆଳ ଦେଖାଇ ଯିବାକୁ ଦେଇନି । ଅପର୍ଣ୍ଣାକୁ ସେଠି ହୁଏତ ମାସେ ଖଣ୍ଡ ରହିବାକୁ ପଡ଼ନ୍ତା ।

ଗୋଟାଏ ମାସ ଅପର୍ଣ୍ଣାକୁ ଭୁବନେଶ୍ୱର ଛାଡ଼ି ଯାଇ ଦିଲ୍ଲୀରେ ରହିବାପାଇଁ ହେଲେ ପ୍ରକୃତରେ ଅନେକ ଅସୁବିଧା ଥିଲା । ମେଟ୍ରିକ୍ ପରୀକ୍ଷା ଦେବାକୁ ପ୍ରସ୍ତୁତ ହେଉଥିବା ଝିଅକୁ ସେ କେଉଁଠି ଓ କାହା ଦାୟିତ୍ୱରେ ଛାଡ଼ିବ । ବିଶେଷ କରି ମେଟ୍ରିକ୍ ପରୀକ୍ଷା ଦେବା ବୟସରେ ଝିଅମାନଙ୍କର ପର ଲାଗିଯାଏ । ଅମିତ ପକ୍ଷେ ସେ ଦାୟିତ୍ୱ ନେବା ମୋଟେ ସମ୍ଭବ ନୁହେଁ । ଅମିତ କିମ୍ବା ଅପର୍ଣ୍ଣାର ଘର ଆଡୁ ମଧ ସେମିତି କେହି ଆସି ସେମାନଙ୍କୁ ଏ କାମରେ ସାହାଯ୍ୟ କରିପାରୁନଥିଲେ । ଯଦିବା ସେମିତି କେହି ଆସିଲେ ଅସୁବିଧା ହେଉନଥାଆନ୍ତା, ସେଥିରେ କିନ୍ତୁ ଅମିତ ରାଜି ହେଉନଥିଲା ।

ବେଳେବେଳେ ଏମିତି ବି ହୋଇଚି- ଯୋଉ ପ୍ରସ୍ତାବ ଅମିତ ଦେଇଚି ତାକୁ ଅପର୍ଣ୍ଣା ଟାଳି ଦେଇଚି । ପୁଣି ଯୋଉ ପ୍ରସ୍ତାବ ଅପର୍ଣ୍ଣା ଦେଇଚି ତାକୁ ଅମିତ ଟାଳି ଦେଇଚି । ଆଉ ସେତେବେଳେ ଅମିତର କାମର ବ୍ୟସ୍ତତା ମଧ ଅପର୍ଣ୍ଣାର ଏ କାମରେ ବାଧା ସୃଷ୍ଟି କରିଚି । ଅନେକ ସମୟରେ ଅପର୍ଣ୍ଣା ଦେଖିଚି ଅମିତ କୃତ୍ରିମ ସମସ୍ୟା ମଧ ସୃଷ୍ଟି କରିଚି ।

ସେ ବୁଝେ ଅମିତର ମାନସିକତା । ସବୁ ପୁରୁଷ ନାରୀ ଉପରେ କର୍ତ୍ତୃତ୍ୱ ଜାହିର କରନ୍ତି । ସେମାନେ ନିଜକୁ ସବୁରି ଉପରେ କ୍ଷମତା ବିସ୍ତାର କରି ସମସ୍ତ ପୃଥିବୀଟାକୁ ନିଜ ହାତ ମୁଠାରେ ରଖିବାକୁ ଚାହାନ୍ତି ।

ପୁରୁଷ ନାଁର ସତ୍ତାଟି ଯେତେ ଦୁର୍ବଳ ହୋଇଥାଉ ନା କାହିଁକି, ଯେତେ ଅସହାୟ ହୋଇଥାଉ ନା କାହିଁକି ଏବଂ ଏପରିକି ସେ ପଙ୍ଗୁ ହୋଇଥିଲେ ମଧ ତାର ପ୍ରଭୁତ୍ୱ ଜାହିର କରିବାର ଅଖଣ୍ଡ କ୍ଷମତାରୁ କାଣିଚାଏ ମଧ ସେ କାହାକୁ ଦେବାକୁ ଚାହେଁନା । ତାର ସେ ରତ୍ନ ସିଂହାସନରୁ ତାକୁ ଏ ଯାଏ କେହି ହଟେଇ ପାରିନାହାନ୍ତି କି ପାରିବେନି ମଧ । ତାହା ପୁରୁଷର ସହଜାତ ପ୍ରବୃତ୍ତି ।

ଅପର୍ଣ୍ଣା ସେଦିନ ନିଜକୁ ଟିକିଏ ଛୋଟ କରି ପକାଇଲା । ଏକା ପଦବୀ, ଏକା ଦରମା ପାଉଥିବା ସ୍ୱାମୀ ପାଖରେ ସେତ କେତେଥର ଏମିତି ନିଜକୁ ସମର୍ପଣ କରିଦେଇଚି । ସମର୍ପଣ ଛଡ଼ା ନାରୀ ପାଖରେ ଆଉ କ'ଣ ଥାଏ ଯେ ? ଭାରତୀୟ ନାରୀର ଅନ୍ୟ ନାମ ତ ସମର୍ପଣ । ଅନ୍ତତଃ ଆଜିଯାଏ ତ ସେଇ ଧାରା ଚାଲିଆସିଚି । ହିମାଳୟରୁ ବାହାରି ସାଗରରେ ସମର୍ପିତ ନଦୀଟିଏ ପରି, ତାକୁ ଗଙ୍ଗା କୁହାଯାଇପାରେ କି ଯମୁନା କୁହାଯାଇପାରେ । ନଦୀଟା କେବେ ଉପରକୁ ଉଠିଯାଇପାରେନା । ନଦୀର ଧର୍ମ ନିମ୍ନଗାମୀ । ସେ ଯଦି ତାର ଉର୍ଦ୍ଧ୍ୱଗାମୀ ଗତିର ଅଧିକାରୀ ହୋଇଥାଆନ୍ତା ତେବେ ତାର ନାମ ନଦୀ ନହୋଇ ଅନ୍ୟ କିଛି ହୋଇଥାଆନ୍ତା- ନଦୀ ନୁହେଁ । ଆଉ ତା'ଛଡ଼ା ନଦୀର ନିମ୍ନଗାମୀ ଗତି ହିଁ ତାର ସୌନ୍ଦର୍ଯ୍ୟ । ସେ ତଳକୁ ତେଇଁ ତେଇଁ ଯାଉଥିଲା ବେଳେ ତା' ଦେହରେ କେମିତି କେଜାଣି ଅପରୂପ ଶୋଭାଟିଏ ସୃଷ୍ଟି ହୁଏ । ସେତିକିବେଳେ ତାର ଦୁଇ କୂଳରେ ଛିଡ଼ା ହୋଇ ଅନ୍ୟମାନେ ତାକୁ, ତାର ସୌନ୍ଦର୍ଯ୍ୟକୁ ଉପଭୋଗ କରନ୍ତି । ସେମାନେ ଆକର୍ଷିତ ହୋଇପଡ଼ନ୍ତି ।

ଅପର୍ଣ୍ଣା ସେଇ ମୁହୂର୍ତ୍ତରେ ନିଜକୁ ନଦୀରେ ପରିଣତ କରିଦେଲା । ସେ ତାର ଦେହର ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗରେ ଅସଂଖ୍ୟ ଢେଉ ସୃଷ୍ଟି କଲା । ନିଜର ଅସୁମାରୀ ତରଙ୍ଗରେ ଅପୂର୍ବ ସଙ୍ଗୀତର ମୂର୍ଚ୍ଛନା ସୃଷ୍ଟି କଲା, କହିଲା- ତୁମେ ମୋତେ ସନ୍ଦେହ କରୁଚ କି ଅମିତ ? ଆଦ୍ୟ ଯୌବନରେ ଦିଲ୍ଲୀରେ ପାଠ ପଢୁଥିଲାବେଳେ ଯେଉଁ ସ୍ୱାଭାବିକ ଦୁର୍ବଳତା ଦିନେ ଆକ୍ରମଣ କରିଥିଲା ମୋତେ, ନିଜକୁ ରକ୍ଷା କରିବାର ସୁଯୋଗ ନଦେଇ, ସେସବୁ କଥା ତ ତୁମେ ଜାଣ । ମୁଁ ତ କୌଣସି କଥା ତୁମକୁ ଲୁଚେଇନି । ଲୁଚେଇବାର ଆବଶ୍ୟକତା ମଧ ନଥିଲା । କାରଣ ସେ ସବୁ ଏବେ ଏକ ସ୍ୱାଭାବିକ ପ୍ରକ୍ରିୟା । ତାକୁ ଛାଡ଼ି ମଣିଷ ନାହିଁ କିମ୍ବା ମଣିଷକୁ ଛାଡ଼ି ପ୍ରାଣ ନାହିଁ ।

ତୁମେ ଏକଥା ବି ଜାଣ ତାର ପରିସମାପ୍ତି ସେଇଠି ସେଇଦିନ ଘଟିଚି ଯୋଉଦିନ ମୁଁ ଦିଲ୍ଲୀ ଛାଡ଼ିଚି । ତାର ପ୍ରମାଣ ମଧ ତମେ ପାଇ ନଥିବ କି ? ସ୍ୱପ୍ନରେ ବି ତ ନୁହେଁ ବୋଲି ମୋର ଧାରଣା । ନା ଆଉ କିଛି ସେ ଅଗ୍ନି ପରୀକ୍ଷାର ଅନ୍ତ ବାକି ଅଛି ? ତୁମେ ଯଦି କହିବ ମୁଁ ସେ ପରୀକ୍ଷାରେ ମଧ ଅବତୀର୍ଣ୍ଣ ହେବାକୁ ପ୍ରସ୍ତୁତ ଅଛି । ଏବେବି ପ୍ରସ୍ତୁତ ଅଛି ।

ଅପର୍ଣ୍ଣା ଅମିତର ବେକଟାରେ ଦୁଇ ହାତ ଛନ୍ଦି ଜଡ଼େଇ ଧରିଲା । ଏବଂ ଦୁଇଟି ମୁହଁକୁ ଏକାକାର କରିଦେଲା ।

ମୁଁ ତ ସବୁ କଥା ତୁମକୁ କହିଦେଇଚି । ସବୁ କଥା କହିଦେବା ଅର୍ଥ ମୁଁ ସେସବୁ ଚିନ୍ତାକୁ ସେଇଦିନଠୁ ମନରୁ ପୋଛି ଦେଇଚି । ଆଉ କେବେ ବି ଆଣି ନାହିଁ । ଆଣିବାର ଆବଶ୍ୟକତା ପଡ଼ି ନାହିଁ । ତୁମେ ଯେଉଁଦିନଠୁ ସେ ସ୍ଥାନଟିକୁ ଅଧିକାର କରିନେଇଚ ସେଠି ଅନ୍ୟ କେହି ଅଧିକାର କରିବ କେମିତି ? ସେ ଅପହଞ୍ଚ ଇଲାକାର ପାଖାପାଖି ସ୍ଥାନକୁ ମଧ କେହି ଆସି ନାହିଁ । ତୁମେ ବିଶ୍ୱାସ କରୁନ ?

ଅମିତ ନିଜକୁ ଅପର୍ଣ୍ଣାର ବାହୁ ବନ୍ଧନରୁ ମୁକ୍ତ କରିନେଲା ଏବଂ ବିଛଣାରେ ସଜାଡ଼ି ହେଇ ଶୋଇଲା । ସେ କହିଲା ଯେଉଁ କଥା କେହି କେବେ କହିପାରେନା କି କହିହୁଏନା, ବିଶେଷ କରି ନିଜର ଲୋକ ପାଖରେ, ତୁମେ ତାକୁ କହି ଅଯଥାଟାରେ ଅନେକ ଆଶଙ୍କା ସୃଷ୍ଟି କରୁଚ । ତୁମେ ଜସ୍ପୁର କଥାଟା ମୋତେ ସେତେବେଳେ ନ କହିଥିଲେ ଯେମିତି ଚଳିଥାଆନ୍ତା ଏବେ ମଧ ତାର ପୁନରାବୃତ୍ତି କରିନଥିଲେ ଆହୁରି ଭଲ ହେଇଥାଆନ୍ତା । ସବୁ କଥା ସମସ୍ତଙ୍କୁ ପ୍ରକାଶ କରାଯାଏ ନାହିଁ । ଯଦିଓ ସମସ୍ତେ ଜାଣନ୍ତି ସମସ୍ତଙ୍କ ପାଖରେ କିଛି ନା କିଛି ଦୁର୍ବଳତା ଥିବ । କାୟିକ ନଥିଲେ ବି ମାନସିକ ସ୍ତରରେ । ଏବର ଚଳନ୍ତି ସମାଜରେ ତାର ବ୍ୟତିକ୍ରମ କାହିଁ ? ମୁଁ ତ ଭାବୁଚି, ସମସ୍ତେ ଭାବନ୍ତି ତାର ସ୍ୱାଟି ଗୋଟି ପଣେ ଗଙ୍ଗା ହେଇଥାଉ । ଅନ୍ତତଃ ତାହାହିଁ ଦୃଶ୍ୟମାନ ହେଉ । ନଦୀ ଭିତରେ ପଙ୍କ ଏବଂ ଅନ୍ୟ ଆବିଳତା ଏକ ଅବାରିତ ସତ୍ୟ । ସେ ସତ୍ୟ ଯୁଗରୁ ଯୁଗକୁ ଚାଲି ଆସିଚି । ତା ସତ୍ତ୍ୱେ ନଦୀର ସ୍ୱଚ୍ଛତା, ତାର ନିର୍ମଳତା ଏବଂ ସର୍ବୋପରି ସେ ପାଣିର ପବିତ୍ରତା ମଣିଷକୁ ଯୁଗେ ଯୁଗେ ଆକର୍ଷଣ କରି ଆସୁଚି । ମଣିଷ ସେତକରେ ବାନ୍ଧି ହେଇପଡ଼େ । ସେ କେବେବି ଦେଖେନା ସାତ ତାଳ ପାଣି ତଳେ କ'ଣ ଅଛି ।

ତୁମେ ଯାହା କହୁଚ ତାହା ଯେ ଠିକ୍ ଏଥିରେ ମୋର କିଛି କହିବାର ନାହିଁ । ନ କହିବାର କଥାଟାକୁ ସବୁବେଳେ ନିଜ ଭିତରେ ରଖିବାଟା ହିଁ ବୁଦ୍ଧିମାନର କାମ । କିନ୍ତୁ ସେ କଥାଟାକୁ ମୁଁ କେତେଦିନ ଏମିତି ନିଜ ଭିତରେ କବାଟ ପକେଇ ରଖି ପାରିଥାଆନ୍ତି । ମଣିଷର ଦୁର୍ବଳତା ଏକ ଶକ୍ତିଶାଳୀ ଜୀବ । ସେ ଯେତେ ଦୁର୍ବଳ ଦେଖାଯାଉଥିଲେ ମଧ ସେ ପ୍ରକୃତରେ ସେତେ ଦୁର୍ବଳ ନୁହେଁ । ସେ ଗୋଟାଏ ପଞ୍ଜୁରୀ ଭିତରର ବାଘ । ସାମାନ୍ୟ ଟିକିଏ ସୁରାକ ପାଇଲେ ପ୍ରଚଣ୍ଡ ପରାକ୍ରମରେ ସେ ଶିକାର ଉପରକୁ ଝାମ୍ପ ଦିଏ ଏବଂ ଶେଷରେ ତାକୁ ମାରି ଖାଏ । ତୁମକୁ ସବୁ କଥା କହି ଦେଇ ମୁଁ ସେ ବାଘକୁ ମୋ ଭିତରୁ ମୁକ୍ତ କରିଦେଇଚି, ସେ

ପଞ୍ଜୁରୀକୁ ଖାଲି କରିଦେଇଚି । ସେଇଟା ଖାଲି ହେଇଯିବା ପରେ ମୁଁ ବେଶ୍ ଶାନ୍ତିରେ ଅଛି । ଆରାମରେ ଅଛି । ଅପର୍ଣ୍ଣା ଗୋଟିଏ ନିଃଶ୍ୱାସରେ କହିଗଲା ।

ଅମିତ କହିଲା ତୁମେ ଯାହା କହୁଚ ତାହା କିନ୍ତୁ ବାସ୍ତବତା ଠାରୁ ଅନେକ ଦୂରରେ । ପଞ୍ଜୁରୀ କେବେ ଖାଲି ହୁଏନା କି ବାଘ ମଧ ସ୍ଥାୟୀ ଭାବରେ ସେ ପଞ୍ଜୁରୀ ଛାଡ଼ି ଯାଏନା । ପ୍ରକୃତ କଥାଟା ହେଲା ବାଘର ଯିବା ଓ ନଯିବା ମଣିଷର ମନ ଭିତରେ ଅହରହ ଯୁଦ୍ଧ କରୁଥାଏ । ଏଇ ଯୁଦ୍ଧରେ କିଏ ହାରେ କିଏ ଜିତେ ତାହାଏକ ଆପେକ୍ଷିକ ତତ୍ତ୍ୱ । ମନୋବୈଜ୍ଞାନିକ ମଧ ତାର ସଠିକ ଠିକଣା ନିରୂପଣ କରିପାରିନାହାନ୍ତି । ସେ ହାରଜିତର ସଂଜ୍ଞା ସେମାନେ ମଧ କେବେ ଲକ୍ଷ୍ମଣରେଖା ପାରିହେଇ ଦର୍ଶେଇ ଦେଇ ପାରିନାହାନ୍ତି ।

ମୁଁ ଗଣିତର ଛାତ୍ରୀ ଅମିତ୍ । ସାରା ଜୀବନ ମୁଁ କେବଳ ଅଙ୍କର ଅମୀମାଂସିତ ଅଂଶଗୁଡ଼ିକୁ ନେଇ ଖେଳ ଖେଳି ଆସିଚି । ତୁମର ସେ ମନସ୍ତତ୍ତ୍ୱ ଓ ଦର୍ଶନର ଧାର ଧାରେନି । ମୁଁ ସେ ସବୁର ସୀମା ସରହଦ ମଧ ଛୁଇଁ ପାରେନା । ମୋତେ କ୍ଷମା କର । ମୋର ଗୋଟିଏ ପ୍ରସ୍ତାବ ରଖିବ ?

କୁହ !

ତୁମେ ବି ମୋ ସହିତ ଚାଲ । ତୁମର ତ ଅନେକ ଛୁଟି ଅଛି । ମାସଟିଏ ତୁମକୁ ବେଶି କିଛି ନୁହେଁ । ମୁଁ ତୁମକୁ ପ୍ରତିଶ୍ରୁତି ଦେଉଚି ମୋ କାମରେ ମୋତେ ମାସଟିଏ ମୋଟେ ଲାଗିବନି । ପନ୍ଦର କୋଡ଼ିଏ ଦିନରେ ମୁଁ ସାରିଦେବି । ତୁମେ ପାଖରେ ଥିଲେ ମୋତେ ଆହୁରି ଭଲ ଲାଗିବ । ଇତୁକୁ ଆମେ ମାସଟିଏ ପାଇଁ ମାନସ କକାଙ୍କ ଘରେ ଛାଡ଼ି ଦେଇଯିବା । ସେଠି ତାଙ୍କ ଝିଅ ସହିତ ରହିଲେ ତାର ପଢ଼ାପଢ଼ି କୌଣସି କ୍ଷତି ହେବ ନାହିଁ । ଦୁହେଁ ସାଥିରେ ଯିବେ- ସାଥିରେ ଆସିବେ । ତୁମେ ମୋ ସହିତ ଥିଲେ ଆମେ କାମ କରିବା ସହିତ ସମୟଟାକୁ ଉପଭୋଗ ମଧ କରିପାରିବା । ମୁଁ ମୋ କାମରେ ବ୍ୟସ୍ତ ଥିଲାବେଳେ ତୁମେ ତୁମ ସମୟଟିକୁ ଲାଇବ୍ରେରୀରେ କଟେଇ ପାରିବ । ତମେ ବି ସମୟର ସଦୁପଯୋଗ କରିପାରିବ ।

ଅମିତ ପ୍ରଥମେ କଥାଟାରେ ରାଜି ହେଉନଥିଲା । ସେ ଜାଣୁଥିଲା ଏହାଦ୍ୱାରା ବାହାରେ ଗୋଟାଏ ଧାରଣା ସୃଷ୍ଟି ହେବ ଯେ ମୁଁ ଅପର୍ଣ୍ଣା ଚାରିପଟେ ଅନାବଶ୍ୟକ ବଳୟଟିଏ ସୃଷ୍ଟି କରିଦେଉଚି । ସେ ବଳୟ କାହାର ଓ କାହିଁକି ? ନାରୀ ହେଉ ବା ପୁରୁଷଟିଏ ହେଉ କାହା ଚାରିପଟେ କିଏ ବା ବଳୟ ସୃଷ୍ଟି କରି କାହାର ସମ୍ପର୍କଠାରୁ ଦୂରରେ ରଖିପାରିଚି ? ପୁରାଣଠାରୁ ଇତିହାସ ଯାଏ ଏବଂ ଇତିହାସଠାରୁ ଏବର ସମାଜ ଭିତରେ କେତେବେଳେ ଏକଥା ସମ୍ଭବ ହେଇନଥିଲା କି ଆଜି ମଧ ନୁହେଁ । ବିଶେଷ କରି ଆଜି ଯେତେବେଳେ ନାରୀଟି ସବୁବେଳେ ବାହାରକୁ ଯାଉଚି, ଯିବାର ଆବଶ୍ୟକତା ପଡୁଚି, ସେ ଯେତେବେଳେ ପୁରୁଷ ସହିତ ସବୁବେଳେ ବାହାରେ ମିଶୁଚି, ସେତେବେଳେ ଆବଶ୍ୟକତାକୁ ଚାହିଁ ଯେଉଁ ନୂଆ ଚଳଣୀଟି ଏବେ ମୁଣ୍ଡଟେକିଚି ତାକୁ କିଏ ଓ କେମିତି ଅଟକେଇ ଦେଇପାରିବ ? ଅମିତ ଯଦି ଅପର୍ଣ୍ଣା ସାଥିରେ

ଥାଏ ତେବେ ସେ ସୁରକ୍ଷାର ବାଡ଼ କେହି ଡେଇଁ ପାରିବେ ନି ? କିଏ ଗେରେଣ୍ଟି ଦେବ ଯେ ଅପର୍ଣ୍ଣା ନିଜେ ନ ଚାହିଁଲେ ମଧ ଆଉ ଜଣେ କେହି ଆସି ତା ଚାରିପଟେ ନିଜର ଛାୟାର ପଟଳଟିଏ ସୃଷ୍ଟି କରି ତାକୁ ଅନ୍ଧ କରି ନଦେବ ? ସେତେବେଳେ ଅପର୍ଣ୍ଣା ଦୋଷ କଲା କି ନା ସେ କଥା କିଏ କେମିତି ବିଚାର କରିବ ? କିଏ ପ୍ରମାଣ କରିପାରିବ ଯେ ଅପର୍ଣ୍ଣା ନିଜର ପାରିବା ପଣ ବାହାରକୁ ନିଜେ ଇଛା କରି ଯାଇନାହିଁ ?

ଅମିତ ପ୍ରଥମେ ମନା କରୁଥିଲା । କିନ୍ତୁ ପରେ ସେ ଅପର୍ଣ୍ଣାର ଅନୁରୋଧ ଏଡ଼ି ପାରିନଥିଲା ।

ଅପର୍ଣ୍ଣା ତା' ପରଦିନ ଗୋଟାଏ ଟ୍ରାଭେଲ ଏଜେଣ୍ଟ ସାହାଯ୍ୟରେ ଦିଲ୍ଲୀର ଏକ ମହତ୍ୱପୂର୍ଣ୍ଣ ଜାଗାରେ ଗୋଟାଏ ହୋଟେଲରେ ମାସକ ପାଇଁ କୋଠରିଟିଏ ରିଜର୍ଭ କରିଦେଲା । ହୋଟେଲଟି ଥିଲା ଦିଲ୍ଲୀ ଇଉନିଭରସିଟିର ଅଳ୍ପ ଦୂରରେ । ତେଣୁ ଯିବା ଆସିବାରେ କୌଣସି ଅସୁବିଧା ନଥିଲା ।

ମାତ୍ର ଗୋଟିଏ ଦିନ ଭିତରେ ସେମାନେ ହୋଟେଲରେ ତାଙ୍କର ସବୁ ବ୍ୟବସ୍ଥା କରିନେଲେ । ଅପର୍ଣ୍ଣା କହିଲା, ଆମେ ହୋଟେଲରେ ପ୍ରତିଦିନ ଜଳଖିଆ ନଖାଇ ନିଜ ନିଜର ବ୍ୟବସ୍ଥା କରି ଦେଇପାରିବା । ବ୍ରେଡ୍ ବଟର, ଫଳ ଓ ଦୁଧ ବୋତଲ ଆମେ ଆଣି ପାଖରେ ରଖିଥିଲେ ଆମକୁ ଆଉ କୌଣସି ଅସୁବିଧା ହେବ ନାହିଁ । ମୁଁ ଦଶଟା ବେଳକୁ ଯାଇ ତିନିଟା ବେଳକୁ ଫେରୁଥିବାରୁ ଆମେ ଆମର ପୂର୍ବ ଲଞ୍ଚ ସମୟଟାକୁ ମେନ୍‌ଟେନ୍ କରିପାରିବା । ଫେରିଲେ ସାଥି ହୋଇ ଖାଇବା । ସନ୍ଧ୍ୟାରେ ଆମେ ବୁଲି ଯାଇପାରିବା । ଫେରିଲାବେଳକୁ ବାହାରେ ମଧ ଖାଇ ଆସି ପାରିବା । ତମ ପାଇଁ ମୁଁ ଲାଇବ୍ରେରୀରେ ଦୈନିକ ପଢ଼ାପଢ଼ି ପାଇଁ ସବୁ ସୁବିଧା କରିଦେବି । ସେ ଲାଇବ୍ରେରୀଆନ ମୋର ଆପଣାର ଲୋକ । ତାଙ୍କ ଝିଅ ମୋ ସହିତ ପଢୁଥାଏ । ସେ ଏବେ ଅଛନ୍ତି କି ରିଟାୟାର କଲେଣି ଜାଣିନି । ତଥାପି ଅସୁବିଧା ହେବ ନାହିଁ । ତେଣୁ ଆମର ଯିବା ଆସିବା ମଧ ଏକା ସାଥିରେହେବ । ଆଉ ଥରେ ସେ ଲାଇବ୍ରେରୀରେ ପଶିଗଲେ ତମେ ଯେମିତିକା ଲୋକ ଦିନ ଯାକ ସେଠୁ ଉଠିପାରିବନି ।

ପରଦିନ ସକାଳୁ ଅପର୍ଣ୍ଣା ଉଠିଲା ଏବଂ ଅମିତକୁ ଉଠେଇ ଦେଇ କହିଲା ହେଇ ମୁଣ୍ଡ ପାଖରେ ଟି ପଟ୍‌ଟି ଥୁଆ ହେଇଚି । ଚା ପିଉ ଥାଅ । ମୁଁ ମେନେଜରଙ୍କ ସହିତ ଆମର ପୋଗ୍ରାମଟା ଠିକ୍ କରିଦେଇ ଆସୁଚି ।

ସେ ତଳକୁ ଚାଲିଗଲା । ମେନେଜରଙ୍କ ରୁମ୍‌ଟା ଥିଲା ତଳ ମହଲାରେ । ବିରାଟ ରୁମ । ଏଆର କଣ୍ଡିସନରଟିଏ ମଧ ଲାଗିଚି । ଅପର୍ଣ୍ଣା ରିସର୍ଚ୍ଚ କାମ କରିବାକୁ ଆସିଚନ୍ତି ଜାଣି ସେ ତାକୁ ଅତ୍ୟନ୍ତ ଆନ୍ତରିକତାର ସହିତ ସ୍ୱାଗତ ଜଣେଇଲେ । ଅପର୍ଣ୍ଣାକୁ ସେ କଫି ମଧ ଦେଲେ । କଫି ପିଉ ପିଉ ଅପର୍ଣ୍ଣା ତାର କାର୍ଯ୍ୟକ୍ରମ ବିଷୟରେ ସବୁ କଥା ଜଣାଇଦେଲା । ସେ

ଏକଥା ମଧ କହିଦେଲା ଯେ ଆମେ ଦୈନିକ ଦିନରେ ନିଶ୍ଚୟ ଖାଇବୁଁ କିନ୍ତୁ ବ୍ରେକଫାଷ୍ଟ ଓ ଡିନର ଆମର ବାଧ୍ୟତାମୂଳକ ନୁହେଁ । ତେବେ ଆମେ ଆଗରୁ ଜଣାଇଦେବୁଁ । ଲଞ୍ଚ ଓ ଡ଼ିନରର ମେନ୍ୟୁ କେବେ କ'ଣ ହେବ ସେ କଥା ମଧ ଜଣେଇ ଦିଆଯିବ । ତେବେ ପ୍ରତିଦିନ ସକାଳ ୬ଟା ଓ ସନ୍ଧ୍ୟା ୫ଟାରେ ଚା' ଠିକ୍ ସମୟରେ ଯେମିତି ଦିଆଯାଏ ।

ଶେଷରେ ଅପର୍ଣ୍ଣା କହିଲା, ଗୋଟାଏ ବିଶେଷ ଅନୁରୋଧ । ସେତକ ସାହାଯ୍ୟ ଆମର ଦରକାର । ସେ କହିଲା ବେଳେବେଳେ ଆମର ଲୋକଟିଏ ଦରକାର, ଯେ କି ବେଳ ଅବେଳରେ ଆମର ବ୍ୟକ୍ତିଗତ କାମ କରିବ ।

ମେନେଜର ସେଥିରେ ରାଜି ହେଲେ । ସେ କହିଲେ ମୁଁ ବିଶେଷ ଭାବେ ଗୋଟିଏ ଲୋକ ଆପଣଙ୍କ ପାଇଁ ଛାଡ଼ି ଦେଇଚି । ଆପଣ ତାକୁ ଯେତେବେଳେ ଇଛା କାମରେ ଲଗେଇ ପାରିବେ । ଲଣ୍ଡ୍ରୀର ସବୁ କାମ ମଧ ସେ କରିଦେବ । ଖୁବ୍ ଭଲ ପିଲା । ଖୁବ୍ ବିଶ୍ୱାସୀ ମଧ । ଘରର ଚାବି ମଧ ଆପଣ ଚାହିଁଲେ ତାକୁ ଦେଇ ଯାଇପାରିବେ । ତେବେ ସେ କାମ ପାଇଁ ଆମର ସ୍ୱତନ୍ତ୍ର ଲୋକ ଅଛନ୍ତି । ତେବେ ଆପଣ ତାକୁ ଚାବି ଦେଲେ ସେ ଆପଣଙ୍କ ଗଲାବେଳେ ଓ ଆସିଲାବେଳେ ଅପେକ୍ଷା କରିଥିବ । ଅନ୍ତତଃ ଆପଣଙ୍କ ଆସିବାର ଅଧଘଣ୍ଟାଏ ପୂର୍ବରୁ ରୁମ୍ ଖୋଲି ଏ.ସି. ଚଲେଇ ଦେଇଥିବ । ଆପଣ ତାକୁ ପ୍ରତିଦିନ ଟିପ୍ସ ନଦେଇ ଏକାଥରେ ଦେବେ ।

ଅପର୍ଣ୍ଣା ଖୁସି ହେଇଗଲା । ସେ ମେନେଜରଙ୍କୁ ଅଶେଷ ଧନ୍ୟବାଦ ଦେଇ ଉଠିଲା ଏବଂ ବୁଲିପଡ଼ି କୋଠରିରୁ ବାହାରି ଆସିଲାବେଳକୁ ହଠାତ୍ ଥମକି ଠିଆହେଇଗଲା । ସେ ଯେମିତି ବାଘଟାଏ ଦେଖିଲା । ବିରାଟ ମହାବଳ ବାଘ । ପାଟି ଆଁ କରି ତା' ଆଡ଼କୁ ଅନେଇଚି । ଏଇନେ ଗିଳିଦେବ ଗିଳିଦେବ କହୁଚି । ଇସ୍ କି ବିକଟାଳ ତାର ମୁହଁ, ଭୟଙ୍କର ତାର ଆଖି । ଲମ୍ବା ଲାଙ୍ଗୁଡ଼ଟା ଧୀରେ ଧୀରେ ଏପାଖ ସେପାଖ ହେଉଚି ।

"ଆପ୍ ଜାନତେ ହେଁ, ମେଡମ୍ ? ଇଏ ହୋଟେଲକା ମାଲିକ୍ ।" ମେନେଜର ଅପର୍ଣ୍ଣା ପଛପଟେ ଠିଆହେଇ କହିଲେ ।

ଅପର୍ଣ୍ଣା ପୁଣି ଥରେ ଚମକି ପଡ଼ିଲା । ମେନେଜରଙ୍କ ଆଡ଼କୁ ବୁଲିପଡ଼ି ସେ ପଚାରିଲା କ୍ୟା ନାମ୍ ହେ ଉନ୍‌କା ?

ପ୍ରଦୀପ କପୁର, ମେଡମ୍ ? ଗୋଟାଏ ଚେନ ଅଫ୍ ହୋଟେଲର ମାଲିକ । ବେଶୀ ବୟସ ନୁହେଁ- ଏଇ ପଇଁଚାଳିଶ/ପଚାଶ ଭିତରେ ହେବ ।

"ହୁଁ, ଫଟୋରୁ ତ ତାହାହିଁ ଜଣାପଡୁଚି ।" ଅପର୍ଣ୍ଣା ଭିତରେ ସେତେବେଳକୁ ଏକ ଅଜଣା ଆତଙ୍କର ଉଦ୍‌ଗୀରଣ ଆରମ୍ଭ ହୋଇଯାଇଥାଏ । ତା ମୁଣ୍ଡ ଭିତରର ଶିରା ପ୍ରଶିରାଗୁଡ଼ାକ ଯେମିତି ଚଟ୍‌ଚଟ୍ କରି ଛିଣ୍ଡିଯିବାକୁ ଆରମ୍ଭ କଲା । ସେ ଏକ ଅବ୍ୟକ୍ତ ଯନ୍ତ୍ରଣାରେ ଯେମିତି

ଏଇକ୍ଷଣି ଫାଟିପଡ଼ିବ । କେମିତି କେଜାଣି ତା' ପାଟିରୁ ଆପେ ଆପେ ବାହାରି ପଡ଼ିଲା, କପୁର ସାହେବ କ'ଣ ଏଠି ଥାଆନ୍ତି ? ଏଇ ହୋଟେଲରେ ? ?

ସେ ଏଇଠି କାହିଁକି ରହିବେ ? ତାଙ୍କର କଅଣ ଘର ନାହିଁ ? ସାଉଥ ଏକ୍ସଟେନ୍‌ସନ୍ ଓ ଡିଫେନ୍ସ କଲୋନୀରେ ତାଙ୍କର ଦୁଇଟା ଘର ଅଛି । ବିରାଟ ବିରାଟ ଘର । ଗୁରଗାଁଓରେ ତାଙ୍କର ବିରାଟ ଫାର୍ମ ହାଉସ । ମାନେ ଏତେ ବଡ଼ ଫାର୍ମ ହାଉସ୍ ବୋଧେ ଆଉ କାହାରିନଥିବ । କିନ୍ତୁ ସେ କୋଉଠି ନଥାନ୍ତି ।

''ମାନେ ?'' ଅପର୍ଣ୍ଣା ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

ମାନେ ଡିଫେନ୍ସ କଲୋନୀ ଘରେ ଥାଆନ୍ତି ତାଙ୍କ ବାପ ମାଆ । ସେ ଘରଟା ତାଙ୍କ ବାପାଙ୍କ ନାଁରେ । ସାଉଥ ଏକ୍ସଟେନସନ୍ ଘରେ ଥାଆନ୍ତି ତାଙ୍କ ଶାଳୀ ଓ ସଢୁ । ସେ ଘରଟା ଶାଳୀଙ୍କ ନାଁରେ । ଆଉ ଗୁରଗାଓଁ ଘରଟା ତାଙ୍କ ସାନ ଭାଇ ଦେଖାଦେଖି କରନ୍ତି ।

ତେବେ ସେ କେଉଁଠି ଥାଆନ୍ତି ?

ଆମେରିକାରେ ପରିବାର ସହ ।

ଗୋଟାଏ ବିରାଟ ବୋଝ ଯେମିତି ଅପର୍ଣ୍ଣା ମୁଣ୍ଡରୁ ହଠାତ୍ ଓହ୍ଲେଇ ଗଲା । କେତେ ସହଜ ଓ ହାଲକା ହୋଇଗଲା ତା ମନଟା ।

ସେ ପୁଣି ଥରେ କପୁରର ବିଶାଳକାୟ ଫଟୋଟାକୁ ଅନେଇଲା । ସେଇ ସମୟର ଫଟୋ ବୋଧେ । କି ବାହାଘର ପରର ହୋଇପାରିଥାଏ । କେମିତି ଗୋଟାଏ ଔଜ୍ଜଲ୍ୟ କପୁର ମୁହଁକୁ ଘାରି ପକେଇଚି । ଆଖି ଦି'ଟା ବେଶ୍ ତେଜଦୀପ୍ତ । ଆଗ ଅପେକ୍ଷା ବେଶି । କିନ୍ତୁ ଆଗର ସେ ସରଳତା, ପ୍ରଫୁଲ୍ଲତା, ସେ ହସର ଉଦ୍ଦାମତା, ସେ ସବୁରେ ଟିକିଏ ମହଳଣ ପଡ଼ିଆସିଚି । ଅର୍ଥର ପ୍ରାବଲ୍ୟ ସେ ସବୁକୁ ଚାପି ଦେଇଥିବ । ଦେହ ଓ ଶରୀରର କୋଣେ କୋଣେ ଯେମିତି ଯୌବନୋଚିତ ଅହମିକା ଆସ୍ତେ ଆସ୍ତେ ମାଡ଼ି ଆସୁଚି । ତା' ଉପରେ ଗୋଟେ ଦାୟିତ୍ୱବୋଧର ଛାପ ସ୍ପଷ୍ଟ ହୋଇ ଉଠୁଚି ।

''କପୁର ଆଗ ଅପେକ୍ଷା ସୁନ୍ଦର ଦେଖାଯାଉଚି ?'' କିଏ ଜଣେ ଯେମିତି ତାକୁ ଅକସ୍ମାତ ପ୍ରଶ୍ନଟିଏ କଲା ।

ଚମକି ପଡ଼ିଲା ଅପର୍ଣ୍ଣା । କିଏ ପଚାରିଲା ତାକୁ ? କାହିଁକି ଏ ପ୍ରଶ୍ନ ? ଆଜି ଏତେ ଦିନ ପରେ ? ଦୁର୍ବଳତାର ବାଘଟା ତେବେ ଏଇଠି କେଉଁଠି ଲୁଚିଚି । ବଡ଼ ଭୟଙ୍କର ସେ ବାଘ । ଅତ୍ୟନ୍ତ ପରାକ୍ରମୀ ।

କପୁର ସାହେବ ପାୟ ମାସକୁ ଥରେ ଦି' ଥର ଏଠାକୁ ଆସନ୍ତି । ଦିଲ୍ଲୀ ହୋଟେଲ ମାଲିକ ଏସୋସିଏସନର ସେ ଏବେ ସମ୍ପାଦକ ଅଛନ୍ତି । ହୁଏତ ଆସନ୍ତା ସପ୍ତାହରେ ଆସି ଯାଇପାରନ୍ତି । ପାର୍ଲାମେଣ୍ଟରେ ହୋଟେଲ ଶିଳ୍ପ ଉପରେ ଗୋଟେ ବିଲ ଆସିବାର ଅଛି ।

''ଆଛା ଆଛା'' କହି ଅପର୍ଣ୍ଣା ଦୁଆର ମୁହଁ ଡେଇଁବାକୁ ଆରମ୍ଭ କଲା । ସେ ଯେମିତି ଜଣେଇ ଦେବାକୁ ଚାହୁଁଥିଲା ଯେ ତାର କପୁର ବିଷୟରେ କୌଣସି ଇଣ୍ଟରେଷ୍ଟ ନାହିଁ । ହୁଏତ ତାକୁ ସେ ଜାଣେନି ।

ଅପର୍ଣ୍ଣା ନିଜ କୋଠରି ଭିତରକୁ ଆସିଲାବେଳକୁ ତା ଭିତରେ ଗୋଟାଏ ବିରାଟ ସାମୁଦ୍ରିକ ଝଡ଼ ସୃଷ୍ଟି ହେଇସାରିଥାଏ । ସେ ଝଡ଼ ପାଇଁ ଯେତିକି ବାୟୁମଣ୍ଡଳୀୟ ଚାପ ଆବଶ୍ୟକ ତା' ଅପେକ୍ଷା ଯଥେଷ୍ଟ ବେଶୀ ସୃଷ୍ଟି ହେଇଥାଏ ହୋଟେଲ ମେନେଜରଙ୍କ ଶେଷ କଥା ପଦକରେ । ''କପୁର ଆସୁଚି ? ଆସନ୍ତା ସପ୍ତାହରେ ?''

କୋଠରି ଭିତରେ ଅପର୍ଣ୍ଣା ପଶି ଦେଖିଲା ଅମିତ ବାଥ୍ ରୁମ୍‌ରେ । ସେ ଥମ କରି ସୋଫା ଉପରେ ବସି ପଡ଼ିଲା । ତା' ମୁହଁ ଓ ବେକରେ ଗମ୍ ଗମ୍ ଝାଳ ବହିବାକୁ ଲାଗିଲା । ଏମିତି ଗୋଟାଏ ଆକସ୍ମିକ ବିପଦର ସମ୍ମୁଖୀନ ହେବ ବୋଲି ସେ ମୋଟେ ଆଶା କରିନଥିଲା । କ'ଣ ଭାବିବ ଅମିତ ? ସେ ଯଦି ଭାବେ ଅପର୍ଣ୍ଣା ଜାଣି ଶୁଣି ଏ ହୋଟେଲକୁ ଆସିଚି । ସେ ହୁଏତ ଏମିତି ବି ଭାବିବ ଯେ ଅପର୍ଣ୍ଣା ତାକୁ ଆଜିଯାଏ ଯାହା କହି ଆସିଥିଲା ସେ ସବୁ ମିଛ । କପୁର ସହିତ ତାର ହୁଏତ ଗୋପନ ଯୋଗସୂତ୍ର ଥିଲା । କଅଣ ହେବ ଯଦି କପୁର ଆସି ଏଇ ହୋଟେଲରେ ଅଚାନକ ପହଞ୍ଚିଯାଏ ? ଯଦି ହେଇଯାଏ ସାମନା ସାମନି ? ଏଇ ହୋଟେଲ ବାଉଣ୍ଡାରେ କି କରିଡ଼ର ଭିତରେ ? ଆଉ କ'ଣ ହେବ ଯଦି ସେ ହୋଟେଲ ରେଜିଷ୍ଟରରୁ ମୋ ନାଁଟା ଦେଖି ଛୁଟି ଆସେ ଏଇ ରୁମ୍‌କୁ ? ଆଉ ଠିକ୍ ସେତିକିବେଳେ ଯଦି ଅମିତ ନ ଥାଆନ୍ତି ? ମୁଁ ଏକୁଟିଆ ଥାଏ ? ତେବେ, ତେବେ କ'ଣ ହେବ... ?

ଅପର୍ଣ୍ଣାର ମୁଣ୍ଡଟା କେମିତି କିଟିକିଟି ହେଇଗଲା । ସେ ମୁଣ୍ଡରେ ହାତ ଦେଇ ବସିଥିଲା ବେଳେ ବାଥରୁମ୍‌ର କବାଟ ଖୋଲିଗଲା । ଅମିତ ବାହାରି ଆସିଲା ।

ଅପର୍ଣ୍ଣା ନିଜକୁ ସଜାଡ଼ି ନେଲା । କହିଲା, ଚାଲ ଆଜି ବ୍ରେକଫାଷ୍ଟଟା ବାହାରେ ଖାଇନେବା । ପାଖରେ ଗୋଟାଏ ଭଲ ରେଷ୍ଟୁରାଣ୍ଟ ଅଛି ।

ଯା ଭିତରେ ଅପର୍ଣ୍ଣା ଅନେକ ଥର ଭାବିଲାଣି ସେ ଅମିତକୁ କହି ଏ ହୋଟେଲଟା ବଦଳେଇ ଦେବ । ଆଉ ଗୋଟାଏ ଜାଗାକୁ ଚାଲିଯିବ । କିନ୍ତୁ ଅମିତ ଯଦି ପଚାରେ କାହିଁକି ? କ'ଣ ଅସୁବିଧା ହେଲା ଏଠି ? ସେ ଯେତେବେଳେ ଠିକ୍ କରିଚି ଯେ ଆଜି ସେ ନିଶ୍ଚୟ ଅମିତକୁ କହିବ, ତା ଗଳାଟା କେମିତି ଆପେ ଆପେ ରୁନ୍ଧି ହେଇଆସିଚି । ଲଜ୍ଜା ଓ ଭୟରେ ଜଡ଼ସଡ଼ ହେଇଯାଇଚି ସେ ଏବଂ ତା'ପରେ ପରେ ଦେଖିବ କହି ଅଟକି ଯାଇଚି ।

ସେଇଦିନଠୁ ସେ ଭୁଲରେ ବି ଆଉ ସେ ମେନେଜରଙ୍କ ରୁମ୍ ଆଡ଼କୁ ଯିବାକୁ ସାହାସ କରିନାହିଁ । ଆସନ୍ତା ସପ୍ତାହଟା ଯେତିକି ପାଖେଇ ଆସୁଥାଏ ତା' ଭିତରେ ଗୋଟାଏ ଅଜଣା ଆଶଙ୍କା ଓ ଭୟ ସେତିକି ତାକୁ ମାଡ଼ି ମାଡ଼ି ପଡୁଥାଏ । କିନ୍ତୁ ତା ସତ୍ତ୍ୱେ କପୁରର ତୈଳଚିତ୍ରଟା

ତା' ଭିତରେ ସେତିକି ସ୍ପଷ୍ଟ ହୋଇ ଉଠୁଥାଏ । କ୍ଷଣିକ ପାଇଁ ଗୋଟାଏ ଆମୋଦ ସୃଷ୍ଟି କରୁଥାଏ । ସେ ଯେତେ ତାକୁ ଦୂରେଇବାକୁ ଚେଷ୍ଟା କଲେ ମଧ ସେତିକି ସେ ସେଥିରେ ଗୁଡ଼େଇ ହୋଇ ପଡୁଥାଏ । ଠିକ୍ ଗୋଟାଏ ବୁଢ଼ିଆଣୀ ଜାଲର ମାଛି ପରି ।

ସେଦିନ ୟୁନିଭରସିଟି ଅଫିସ୍‌ରେ ଗୋଟାଏ କାମ ସାରି ଅପର୍ଣ୍ଣା ଓ ଅମିତ ଦୁହେଁ ରାସ୍ତା ଉପରକୁ ଆସିଲାବେଳକୁ ହଠାତ୍ ଅମିତର ଦେଖା ହୋଇଗଲା ଅଶୋକ ସହିତ । ଅଶୋକ ତାର ବାଲ୍ୟବନ୍ଧୁ । ସାଥିରେ ବନ୍ଧୁ ପତ୍ନୀ ଓ ତାର ଦୁଇଟି ପିଲା । ଆଶ୍ଚର୍ଯ୍ୟ ହେଲା ଅପର୍ଣ୍ଣା । ସେତ ଏମାନଙ୍କୁ କେବେ ଦେଖିନଥିଲା । ଅବଶ୍ୟ ଶୁଣିଥିଲା । ଅଶୋକ ରାଜସ୍ଥାନ ବିଶ୍ୱବିଦ୍ୟାଳୟର ପ୍ରାଣୀ ବିଜ୍ଞାନ ବିଭାଗର ମୁଖ୍ୟ । ସେମାନେ ବୁଲି ଆସିଛନ୍ତି । ପରିଚୟ ପର୍ବ ଶେଷ ହେଲା ପରେ ଅଶୋକ ଅନୁରୋଧ କଲା, ଆସ ଆମ ସାଥିରେ । ପିଲାମାନଙ୍କୁ ଟିକିଏ ଜୁ' ଦେଖେଇ ଆଣିବା । ଭାରୀ ବ୍ୟସ୍ତ କରୁଚନ୍ତି । ରାତିରେ ଆମ ସାଥିରେ ଡ଼ିନର କରି ଫେରିବ । ଅପର୍ଣ୍ଣା ମନା କରିପାରିଲା ନାହିଁ । ସେ ମଧ ଚାହୁଁଥିଲା ଯେତେ ବେଶି ସମୟ ବାହାରେ କଟେ ସେତେ ଭଲ । କାରଣ ସେ ଭାବୁଥିଲା କପୁର ହୁଏତ ଯା ଭିତରେ ଆସି ସାରିଥିବ ।

ସେମାନେ ଟିକଟ କାଟି ଭିତରକୁ ପଶିଲେ । ଅପର୍ଣ୍ଣା ଅନେକ ସମୟରେ ଅନ୍ୟମନସ୍କ ରହୁଥାଏ । ଅନ୍ୟମାନଙ୍କ କଥାରେ ଖୁବ୍ ବେଶି ଯୋଗ ଦେଇପାରୁ ନଥାଏ । ସେମାନେ ଆଗ ବଣମଣିଷ, ତା'ପରେ ମାଙ୍କଡ଼, ତା' ସେ ପାଖକୁ ହରିଣ ଓ ଜିରାଫ୍ ଇତ୍ୟାଦି ଦେଖିସାରିଲା ବେଳକୁ ଖୁବ୍ ପାଖରେ ମହାବଳ ବାଘର ହେଣ୍ଟାଳ ଶୁଭିଲା । ପିଲାମାନେ ଚମକି ପଡ଼ିଲେ ।

ଅଶୋକ କହିଲା ଚାଲ ସେଇ ଆଡ଼କୁ । ସେମାନେ ଆଗେଇ ଗଲେ । ଅଶୋକ ପିଲାମାନଙ୍କୁ ଦେଖେଇ ଦେଉଥିଲେ ।

ବାଘଟା ଶୋଇଚି । ବେଳେବେଳେ ଆଖି ବନ୍ଦ କରୁଚି ତା'ପରେ ପୁଣି ଖୋଲି ଦେଉଚି । ଆଉ ବେଳେବେଳେ ପାଟି ଆଁ କରି ନଜର ଗମ୍ଭୀର ସ୍ୱରରେ ଅସନ୍ତୋଷ ପ୍ରକାଶ କରୁଚି ।

ଅଶୋକଙ୍କ ପୁଅ ତାକୁ ଖତେଇ ହେବା ପାଇଁ ମିଛରେ ଥରେ ଘାଉଁ ଘାଉଁ କଲା । ଏଥର ବାଘଟା ଠିଆ ହୋଇପଡ଼ିଲା ଏବଂ ଆସ୍ତେ ଆସ୍ତେ ଆଗେଇ ଆସିଲା । ପିଲାମାନେ ଡରିଗଲେ । ଅନ୍ୟମାନେ ବି । ଅପର୍ଣ୍ଣା ଡ଼ରରେ ଅମିତ ପାଖକୁ ଲାଗି ଲାଗିଲା ବେଳକୁ ଅଳ୍ପ ଦୂରରୁ ଶକ୍ତ ତାର ଜାଲି ପାଖରୁ ଚିତ୍କାରଟିଏ ଶୁଭିଲା "ଆରେ ଅପର୍ଣ୍ଣା ତୁମ୍ ଇଧର ?"

ଚମକି ଉଠିଲା ଅପର୍ଣ୍ଣା । ଅମିତ ଅପର୍ଣ୍ଣାକୁ ଅନେଇଲେ ।

ସେ ଭଦ୍ରଲୋକ ତାଙ୍କ ପରିବାର ପିଲାଙ୍କୁ ଛାଡ଼ି ମାଡ଼ି ଆସିଲେ ଅପର୍ଣ୍ଣା ଆଡ଼କୁ । ତାଙ୍କ ମୁହଁରେ ଅଫୁରନ୍ତ ହସ । ଯେମିତି ଯୁଗଯୁଗର ଶୋଷ ଅଗସ୍ତି ପରି ସେ ଗୋଟିଏ ଅଞ୍ଜୁଳାରେ ଶେଷ କରିଦେବାକୁ ଚାହୁଁଚି ।

ଅପର୍ଣ୍ଣା ଚିହ୍ନେଇ ଦେଲା । "ପ୍ରଦୀପ କପୁର, ଆଉ ଇଏ ଅମିତ, ମାଇଁ ହଜବେଣ୍ଡ ।"

ବାଘ ତାର ଜାଲି ପାଖକୁ ମାଡ଼ି ଆସିଲାଣି । ଅମିତ ଦେଖିଲେ ବାଘଟା ହିଂସ୍ର ହେଇ ଉଠିଛି । ସେ ପ୍ରବଳ ବେଗରେ ଗର୍ଜନ କରୁଚି । ତାର ବିକଟାଳ ଆଖି । ପ୍ରକାଣ୍ଡ ମୁଖ, ବିରାଟ ବିରାଟ ଗୋଡ଼ର ନଖ ଓ ପଞ୍ଝା ସବୁ ଗୋଟିଏ ଶିକାରକୁ ଚଳୁ କରିବାପାଇଁ ଯଥେଷ୍ଟ । ବାଘଟା ପୁଣି ଥରେ ଗର୍ଜି ଉଠିଲା ।

ଅପର୍ଣ୍ଣା ଦୁଇ ହାତରେ ମୁହଁକୁ ଚାପି ରଖି ଚିତ୍କାର କରି ଉଠିଲା । ଅମିତ ଦେଖିଲେ ବାଘଟା ଆଁ କରିଚି ଏବଂ ଅପର୍ଣ୍ଣା ତା' ପାଟି ଭିତରେ ପଶି ଯାଇ ଛାଟି ପିଟି ହେଉଚି । ବାଘ ତାକୁ ନହୁ ନୁହାଣ କରିସାରିଲାଣି । ସେ ତାର ଭୟଙ୍କର ଦାନ୍ତକୁ ଆସ୍ତେ ଆସ୍ତେ ଚାପି ଦେଉଚି ।

ଅସହାୟ ଅମିତ ପ୍ରାଣପଣେ ଚେଷ୍ଟା କରୁଚନ୍ତି ତାକୁ ରକ୍ଷା କରିବାକୁ ।

କପୁର ଠିଆ ହୋଇ ହସୁଚି ।



ମୁଣ୍ଡାୟା - ୨୦୦୧

# ନିରବତାର ଶବ୍ଦମାନେ

ପ୍ରତ୍ୟେକ ସମ୍ପୂର୍ଣ୍ଣ ନିରବତା ଭିତରେ ଯେ ପ୍ରଚଣ୍ଡ ବିସ୍ଫୋରଣ ସୃଷ୍ଟିକାରୀ ଶବ୍ଦଟିଏ ଲୁକ୍କାୟିତ ଥାଏ ଏ କଥା ହୁଏତ ସମସ୍ତେ ଜାଣି ନଥିବେ । ନିରବତା ଯଦି ଅଖଣ୍ଡ ଥାଏ ତେବେ ତାହା ମେଘମୁକ୍ତ ଆକାଶ ପରି ଶାନ୍ତ ଓ କମନୀୟ ମଧ ଥାଏ । ସେ ନିରବତା ଭିତରେ ଲୁଚିଥାଏ ଅନେକ ଶବ୍ଦ, ବାକ୍ୟ, ଭାବ ଓ ଭାବନା । ଖାଲି କାନ ପାରିଲେ ହିଁ ସେମାନେ ଆତ୍ମପ୍ରକାଶ କରନ୍ତି ଏବଂ ବାରମ୍ବାର କର୍ଣ୍ଣକୁହରରେ ଆଘାତ କରନ୍ତି । ସେଇ ନିରବତାର ଭାଷାକୁ ମୁଁ ସେଦିନ ପ୍ରଥମ କରି ପଢ଼ିଲି ଯୋଉ ଦିନ ଶିପ୍ରା ମୋ ହାତକୁ ନୂଆ ବହି ଖଣ୍ଡେ ବଢ଼େଇ ଦେଇ କହିଲା, 'ପଢ଼ିବେ ଏଇଟା ? ନିଅନ୍ତୁ । ଖୁବ୍ ଭଲ ଲାଗିବ । ଚମତ୍କାର ବହି ଏଇଟା ।'

ମୁଁ ବହିଟାକୁ ହାତରେ ନେଲି ଓ ଦେଖିଲି । ବହିଟା ଥିଲା ମାର୍କ୍ୱେଜଙ୍କର 'ୱାନ ହଣ୍ଡ୍ରେଡ ଇଅର୍ସ ଅଫ ସଲିଚିଉଡ' । ନୋବେଲ ପୁରସ୍କାର ପ୍ରାପ୍ତ ଯୁଗାନ୍ତକାରୀ ଉପନ୍ୟାସଟିଏ ।

'ଆପଣ ରଖନ୍ତୁ ସେଇଟା ।'

ମୁଁ ବହିର ପୃଷ୍ଠା ଓଲଟାଇଲି ।

ସେ ମୋ ମନକଥା ଜାଣିପାରି କହିଲା, 'ମୁଁ ପ୍ରେଜେଣ୍ଟ କଲି ବୋଲି ଲେଖା ନାହିଁ, ଏଇ କଥା ଭାବୁଛନ୍ତି ତ ? ସେଥିରେ କ'ଣ ଅଛି ? କିଛି ଲେଖା ନଥିଲେ ବହିଟା ମୁଁ ଆପଣଙ୍କୁ ଦେଇଚି ଏ କଥା କ'ଣ ଆପଣଙ୍କର ମନେପଡ଼ିବ ନାହିଁ । ?'

ସେ ହସିଲା ଏବଂ ସଙ୍ଗେ ସଙ୍ଗେ କହିଲା 'ମୁଁ ଆସୁଛି' ।

ସେଇଟା ଥିଲା ଶିପ୍ରା ସହିତ ସମ୍ପର୍କର ପ୍ରଥମ ପାହାଚର ଶେଷ କଥା । ମୋଟାମୋଟି ଗୋଟାଏ ଆତ୍ମୀୟତାର ବନ୍ଧ ବନ୍ଧା ସରିଥାଏ ।

ମୁଁ ସେଦିନ ଆଶ୍ଚର୍ଯ୍ୟ ହୋଇଯାଇଥିଲି ତା'ର ଏ କଥା ଶୁଣି । କିଛି ନଥିବାର ଶୂନ୍ୟତା ଭିତରେ ଯେ ଏତେ କଥା ଲୁଚି ଥାଇପାରେ ମୁଁ ସେଇଦିନ ବୁଝିପାରିଲି । ଭାବିଲି ମାର୍କ୍ୱେଜ କ'ଣ ଏଇ ଥିଓରୀକୁ ଆଖି ଆଗରେ ରଖି ବହିର ନାମକରଣ କରିଥିବେ ?

ଶିପ୍ରା କିଏ, କ'ଣ ଓ ତା'ର ଅନ୍ୟାନ୍ୟ ପରିଚୟ ମୁଁ ସେ ଯାଏ ମୋଟେ ଜାଣିନଥିଲି । କେବଳ ଏତିକି ଜାଣିଥିଲି ସେ ଗେଷ୍ଟ ହାଉସ୍‌ର ମେନେଜର । ମ'ସରକାରୀ ଟୁର୍‌ରେ ଆସିଲେ

ସେଇଠି ପହଞ୍ଚେ ଏବଂ ସେ ମୋତେ ତା'ର କର୍ତ୍ତବ୍ୟର ପରିସର ଭିତରେ ଥାଇ ରିସିଭ କରେ ଏବଂ ଯତ୍ନ ନିଏ ।

କେନ୍ଦ୍ର ସରକାରଙ୍କର ଜଣେ ଅଫିସର ହିସାବରେ ମୋତେ ଆସାମର ଦିବ୍ରୁଗଡ଼ ସହରରୁ ନାଗାଲ୍ୟାଣ୍ଡକୁ ବାରମ୍ବାର ଯିବାକୁ ପଡ଼ିଥାଏ । ସେଇ ରାସ୍ତାରେ ଛୋଟ ସହରଟିଏ- ଟୁଲି । ଆସାମ ଓ ନାଗାଲ୍ୟାଣ୍ଡ ସୀମାରେ । ସେତେବେଳେ ନାଗାଲ୍ୟାଣ୍ଡର ଏକମାତ୍ର ବୃହତ୍ କାରଖାନା ଥିଲା ଟୁଲିରେ । କେନ୍ଦ୍ର ସରକାରଙ୍କ ଅଧୀନରେ ଗୋଟାଏ କାଗଜ କାରଖାନା । ଅପର ଆସାମ ଆଡୁ ନାଗାଲ୍ୟାଣ୍ଡ ଭିତରକୁ ଯିବାକୁ ହେଲେ ଏଇ ଟୁଲି ସହର ଦେଇ ଯାଇହୁଏ । ଅନେକ ସମୟରେ ଯିବାବେଳେ ବା ଫେରିବା ସମୟରେ ଡେରି ହୋଇ ଯାଇଥିଲେ ଟୁଲି କାଗଜ କଳର ଗେଷ୍ଟ ହାଉସରେ ରହିଯିବାକୁ ପଡ଼େ । ସେଠା ରହଣିଟା ବେଶ୍ ଆରାମ ଦାୟକ । ନାଗାଲ୍ୟାଣ୍ଡ ହେଉ ବା ଆସାମ ହେଉ ସମଗ୍ର ଉତ୍ତର ପୂର୍ବାଞ୍ଚଳୀୟ ରାଜ୍ୟମାନଙ୍କରେ କାର୍‌ରେ ରାତ୍ରୀ ଯାତ୍ରା ନିରାପଦ ନୁହେଁ ।

ଟୁଲି ଛୋଟ ସହରଟା ଗୋଟାଏ ପାହାଡ଼ ଉପରେ । ଏମିତି ତ ନାଗାଲ୍ୟାଣ୍ଡର ପ୍ରାୟ ସବୁ ଜନବସତି ପାହାଡ଼ ଉପରେ । ପାହାଡ଼ ଓ ଘଞ୍ଚ ଜଙ୍ଗଲ ଛଡ଼ା ଆଉ ସେଠି କ'ଣ ଅଛି ଯେ ? ଗେଷ୍ଟହାଉସ୍‌ର ବାରଣ୍ଡା ଉପରେ ବସିଲେ ପାହାଡ଼ ତଳେ କାଗଜ କାରଖାନାର ଦୃଶ୍ୟ ଅତି ଚମତ୍କାର । ଏ ପାଖରେ ପାହାଡ଼, ସେ ପାଖରେ ପାହାଡ଼, ମଝିରେ କାରଖାନା ଓହଳି ପଡ଼ିଥାଏଗୋଟାଏ ଖସି ପଡ଼ିଥିବା ମେଘଖଣ୍ଡ ପରି ।

କାରଖାନା କିନ୍ତୁ ଅଚଳ ହୋଇପଡ଼ିଛି ଅନେକ ଦିନୁ । ଗୋଟାଏ ବିରାଟ ଭୂମିକମ୍ପରେ କାରଖାନାର ମୂଳଦୁଆ କେତେକ ଜାଗାରେ ଏମିତି ଦୋହଲିଗଲା ଯେ କେନ୍ଦ୍ର ସରକାର ତାକୁ ଆଉ ସଜାଡ଼ି ପାରିନଥିଲେ ।

ଶିପ୍ରା ଗୋଟିଏ ନାଗା ଝିଅ । କିନ୍ତୁ ଅପୂର୍ବ ସୁନ୍ଦରୀ । ସାଧାରଣ ନାଗା ଝିଅ ପରି ଗେଡ଼ା ନୁହେଁ । ବେଶ୍ ଲମ୍ବା, ପତଳା, ସରୁ ମୁହଁ ଓ ଗୋରା ତକତକ । ମୁହଁରେ ଯେମିତି ଏଇନେ ରୋଜ୍ ପାଉଡ଼ର ବୋଳିଦେଇ ଆସିଛି । ଯଦିଓ ସବୁ ମଙ୍ଗୋଲିଆନ୍ ଟ୍ରାଇବ୍ ଝିଅର ତାହାହିଁ ପ୍ରକୃତି ଦତ୍ତ । ସେମାନଙ୍କୁ କୌଣସି ମେକଅପ୍ ନେବାକୁ ପଡ଼େନା ।

ଶିପ୍ରା ଥିଲା ସବୁ ଝିଅମାନଙ୍କ ଭିତରେ ଗୋଟାଏ ବ୍ୟତିକ୍ରମ । ମୁଁ ହୁଏତ ଠିକ୍ ଭାବେ ତାକୁ ବର୍ଣ୍ଣନା କରିପାରୁନାହିଁ । ତେବେ ଗୋଟିଏ କଥାରେ କହି ହେବ- ଆଖି ଅଟକି ଯାଉଥିବା ଚେହେରା ଥିଲା ତା'ର । ତା'ର ପର୍ସନାଲିଟି ଶହେଗୁଣ ବଢ଼େଇ ଦଉଥାଏ ତା'ର ବବ୍‌କଟିଂର ସେ ସୁନ୍ଦର କୁଞ୍ଚ କୁଞ୍ଚ ବାଳ । ବେଶ୍ ଗୋଲ କରି କଟା ଯାଇଥାଏ କାନ ତଳ ଯାଏ ।

ନାଗାଲ୍ୟାଣ୍ଡର ସହରମାନଙ୍କରେ ଏ ଦୃଶ୍ୟ ଅବଶ୍ୟ ବିରଳ ନୁହେଁ । ଦେଖିଲେ ମନେହେବ ଯେମିତି ଜଣେ ଜାପାନର କୌଣସି ଗୋଟାଏ ଅତ୍ୟାଧୁନିକ ସହରରେ ଯାଇ ପହଞ୍ଚି

ଯାଇଛି । ଖାଲି ନାଗାଲ୍ୟାଣ୍ଡ ନୁହେଁ ଉତ୍ତର ପୂର୍ବାଞ୍ଚଳର ଅନେକ ଗୁଡ଼ିଏ ରାଜ୍ୟରେ ଥିବା ନାରୀ ପ୍ରାଧାନ୍ୟ ସମାଜ କଥା ଜଣାଶୁଣା । ଦୋକାନ ବଜାରଠାରୁ ଆରମ୍ଭ କରି ଅଫିସ୍ ଓ କୋର୍ଟ ଯାଏ ସବୁଠି ସେମାନେ ମୁକ୍ତ ହୋଇ କାମ କରୁଥାଆନ୍ତି ।

କେମିତି କେଜାଣି ସେ ଦିନ ସେ ମୋତେ ଦେଖି ଯେମିତି ଅଟକି ଯାଇଛି ମୁଁ ମଧ ସେମିତି ତାକୁ ଦେଖି ଦଣ୍ଡେ ଅଟକି ଠିଆ ହୋଇଗଲି ।

ମୋ ଗାଡ଼ି ଗେଷ୍ଟ ହାଉସ୍‌ର ପୋର୍ଟିକୋରେ ଅଟକିଯିବା ମାତ୍ରେ ମୁଁ ସେଥିରୁ ବାହାରି ଦେଖିଲି ସେ ଠିଆ ହୋଇଛି ବାରଣ୍ଡା ଉପରେ ସିଧା ମୋତେ ଚାହିଁ । ତା'ପରେ ଡ୍ରାଇଭର ମୋ ଗାଡ଼ିର ଦରଜା ବନ୍ଦ କରିବା ଶବ୍ଦରେ ମୁଁ ଯେମିତି ଚମକି ପଡ଼ିଲି ସେ ବି ତଳକୁ ମୁହଁ ପୋତିଲା । ତା'ପରେ ପାଦେ ଆଗେଇ ଆସି କହିଲା, 'ମୁଁ ଶିପ୍ରା, ଗେଷ୍ଟହାଉସ୍‌ର ମେନେଜର ।'

ମୋର ଦୁଇହାତ ଉଠି ଆସିଲା, ତା'ର ବି ।

ସେ ତାର' କେଆର ଟେକର୍‌କୁ ଡାକିଲା ଏବଂ କହିଲା ଏକ ନମ୍ବର ରୁମ୍‌କୁ ନେଇ ଯିବାକୁ ।

ଏଇଟା ଥିଲା ଆମର ପ୍ରଥମ ସାକ୍ଷାତ ।

ତା'ପରେ ମୁଁ ଅବଶ୍ୟ ଆଉ କେତେଥର ସେଠାକୁ ଯାଇଛି । ସେ ଯିବା ଭିତରେ ହୁଏତ କିଛିଟା ଅନାବଶ୍ୟକତା ମଧ ଥିଲା । କାହିଁକି କେଜାଣି ଜାଣି ଜାଣି ମୁଁ ମୋର ଟୁର୍ ପୋଗ୍ରାମ ସେମିତି ତିଆରି କରୁଥିଲି । କେତେଥର ଲକ୍ଷ୍ୟ କରିଛି ମୁଁ ଯେତେ ଡେରିରେ ଯାଇ ସେଠି ପହଞ୍ଚିଲେ ବି ସେ ଯେମିତି ମୋତେ ଅପେକ୍ଷା କରିଥାଏ । ଆଉ ସେ ଅପେକ୍ଷା ଭିତରେ ମଧ ଅନେକ କଥା ଯେମିତି ଲୁଚି ରହିଥାଏ ।

ମୁଁ ଥରେ ତାକୁ ରାତି ନଅଟା ପରେ ସେଠି ପହଞ୍ଚି ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ସେଥର ଫେରୁଥିଲି ମୋକକ୍‌ଚଙ୍ଗ୍‌ରୁ । ଗୋଟାଏ ଜିଲ୍ଲା ହେଡ୍‌କ୍ୱାର୍ଟର୍ସ । ଅନେକ ସମସ୍ୟା ସେଠି ଥିଲା । କାମ ସାରି ଫେରିଲା ବେଳକୁ ଡେରି ହୋଇଗଲା । ପଚାରିଲି ତମେ ଏ ଯାଏ ଯାଇନ ?

ସେ ଖାଲି ହସି ଦେଲା ଏବଂ କହିଲା 'ଆଜି ଗେଷ୍ଟ ହାଉସ୍‌ରେ ଷ୍ଟାଫ୍ କମ ଅଛନ୍ତି । ତେଣୁ ଅଟକି ଯିବାକୁ ବାଧ ହେଲି । ତା' ଛଡ଼ା ନଅଟା ତ ଏମିତି କିଛି ଡେରି ନୁହେଁ ।'

ଜଣେ ମେନେଜର ପଦର ଅଫିସର୍‌ର ପାଇଁ ଏତକ ଅବଶ୍ୟ ଯଥେଷ୍ଟ ବେଶି । ହୁଏତ ସେ ତା'ର ବିବେକାନୁମୋଦିତ କର୍ତ୍ତବ୍ୟକୁ ଏଡ଼େଇ ଯିବାକୁ ଚାହୁଁ ନଥିବ କିମ୍ବା ଆଉ କିଛି । ମୁଁ ସେ କିଛିଟାକୁ ହୁଏତ ଏ ଯାଏ ଠିକ୍ ଭାବେ କଳନା କରିପାରିନାହିଁ । କିନ୍ତୁ ଅନ୍ୟ ଦିଗରୁ ଦେଖିଲେ, ଗେଷ୍ଟ ହାଉସ୍‌କୁ ଆସି ତାକୁ ପ୍ରଥମେ ଦେଖିବାର ଗୋଟାଏ ଇଚ୍ଛା ଯେ ମୋ ଭିତରେ ନଥିଲା ସେମିତି କିଛି ନୁହେଁ । ବରଂ ସେଇଟା ହିଁ ଥିଲା ବେଶି ଶକ୍ତିଶାଳୀ, ଯୋଉଥିପାଇଁ ଆସିଲାବେଳେ

ରାସ୍ତାରେ ଅନାବଶ୍ୟକ ଭାବେ ମୁଁ ଡ୍ରାଇଭରକୁ ଥରେ ଦିଥର ଗାଡ଼ିର ସ୍ପିଡ୍ ବଢ଼େଇବାକୁ କହିଛି । ଠିକ୍ ସେଇ ପ୍ରକାର ଏକ ଇଚ୍ଛାକୁ ସେ ତା' ଭିତରେ ସାଇତି ରଖିଥିଲା କି ନା ମୁଁ ଜୋରଦେଇ କହିପାରିବି ନାହିଁ । ମଣିଷର ମନକୁ କଳିବାକୁ ଏଯାଏ କୌଣସି ଯନ୍ତ୍ର ବାହାରି ନାହିଁ ।

ତେବେ ଏ କଥା ମଧ ମୁଁ କେତେଥର ଦେଖିଛି ପ୍ରଥମେ ପ୍ରଥମେ ମୋର ଆବଶ୍ୟକତା ଥାଉ କି ନଥାଉ ସେ ଯେତେବେଳେ ମୋ ରୁମ୍‌କୁ ଆସିଛି, ସାଥିରେ କେଆର ଟେକରକୁ ନେଇ ଆସିଛି । ମୋର ରହଣୀ ଯେମିତି ଆରାମଦାୟକ ହୁଏ, ବେଶି ହୋମଲି ଅନୁଭବ କରେ ସେଥିପାଇଁ ସେ ଯତ୍ନନେବାକୁ ଚେଷ୍ଟା କରିଛି ଏବଂ କେଆର ଟେକରକୁ ସେଇ ଅନୁସାରେ ନିର୍ଦ୍ଦେଶ ମଧ ଦେଇଛି । କିନ୍ତୁ ପରବର୍ତ୍ତୀ ଅବସ୍ଥାରେ ସେ ମୋ ରୁମ୍‌କୁ ଏକୁଟିଆ ଆସିଛି କୌଣସି ଏକ କାମ ବାହାନାରେ ଏବଂ ପଦେ ଦି ପଦ କଥା ହୋଇ ଫେରିଯାଇଛି । ବେଳେବେଳେ ସେ ମୋ ସହିତ କୌଣସି କଥା ନହୋଇ କ'ଣ ଗୋଟାଏ ସେଲ୍ଫ ବା ବାଥରୁମ୍ ଇତ୍ୟାଦି ଚେକ୍ କରିଚାଲିଯାଇଛି । ସେତେବେଳେ ମୁଁ ଭାବେଁ ଏସବୁ କାମ ସେ ମୁଁ ନଥିଲାବେଳେ ମଧ କରିପାରନ୍ତା । ଏହାହିଁ ସାଧାରଣ ନିୟମ ।

ମୁଁ ଆଶ୍ଚର୍ଯ୍ୟ ହେଲି ଏବଂ ମୋର କୌତୁହଳ ମଧ ଅନେକ ବଢ଼ି ଯାଇଥିଲା । ମୁଁ ଥରେ ବାହାରୁ ଫେରି ଦେଖିଲି ମୋ ସାର୍ଟ ପେଣ୍ଟଗୁଡ଼ିକ ଟିକିଏ ସଜଡ଼ା ହୋଇ ରଖାଯାଇଛି । ସୁଟକେଶର ଚାବି ଯୋଡଟା ମୁଁ ଭୁଲରେ ସୁଟକେଶରେ ଲାଗିଥିବା ଅବସ୍ଥାରେ ଛାଡ଼ି ଦେଇଥିଲି ତାକୁ ଅଲଗା ଜାଗାରେ ରଖାଯାଇଛି । ବିଛଣାଟାକୁ ମଧ ସଜାଡ଼ି ଦିଆ ହୋଇଛି ଏବଂ ମୁଣ୍ଡ ପାଖରେ ଇତସ୍ତତଃ ହୋଇପଡ଼ିଥିବା ବହି ଓ ମାଗାଜିନ୍‌ଗୁଡ଼ିକ ମଧ ସଜେଇ ଟେବୁଲ ଉପରେ ରଖାଯାଇଛି ।

ମୋ ଭିତରେ ଗୋଟାଏ ଅନନୁଭୂତ ଶିହରଣ ସୃଷ୍ଟି ହେଲା । ଠିକ ପର ମୁହୂର୍ତ୍ତରେ ସେ ଯେତେବେଳେ 'ରାତିରେ କ'ଣ ଖାଇବେ' ପଚାରିବାକୁ ଆସିଲା, ଯେମିତି ସେ ବରାବର ଆସେ, ମୁଁ ତାକୁ ପଚାରିଲି 'ତୁମେ ଆସିଥିଲ ?'

'ନା' ସେ ଦୁଷ୍ଟାମିର ହସଟିଏ ମୋ' ଉପରକୁ ଫୋପାଡ଼ି ଦେଇ ସେଠୁ ଦ୍ରୁତ ଗତିରେ ଚାଲିଗଲା ।

ସେଦିନ ମୁଁ ଦେଖିଲି 'ନା' ପରି ଏକ କ୍ଷୁଦ୍ରତମ ଶବ୍ଦ କେମିତି ଆସ୍ତେ ଆସ୍ତେ ବ୍ୟାପକ ହୋଇଯାଉଛି । କେତେ ବିଶାଳ ହୋଇଯାଉଛି । ସମ୍ପୂର୍ଣ୍ଣ ନକାରାତ୍ମକ ଶବ୍ଦଟା କେମିତି ଧୀରେ ଧୀରେ ମୋ ଆଗରେ ବିରାଟ ସକାରାତ୍ମକ ଶବ୍ଦରେ ରୂପାନ୍ତରିତ ହୋଇଯାଉଛି । ମୁଁ ଯେମିତି ଅନେକ ଦିନ ମହାଶୂନ୍ୟରେ ବାସ କଲା ପରେ ଏଇ ମାତ୍ର ପୃଥିବୀକୁ ପ୍ରବେଶ କରୁଛି ଏବଂ ପୃଥିବୀର ବିସ୍ତୀର୍ଣ୍ଣ ଅରଣ୍ୟାନୀର ସବୁଜିମା ଦେଖି ବିମୋହିତ ହୋଇଯାଉଛି ।

ମୋତେ ଥରେ ଦି'ଥର ସେ ଏମିତି ମଧ କହିଛି, 'ଆପଣ ସେ ଡାଇନିଂ ରୁମ୍‌କୁ ନଯାଇ ଏଇଠି ଖାଉ ନାହାନ୍ତି ? ମୁଁ ରୁମ ସର୍ଭିସର ସବୁ ବ୍ୟବସ୍ଥା କରିଦେବି । ସେଠି ହୈ ହୈ ଭିତରେ...'

ମୋର ଏକ ନମ୍ବର ରୁମଟା ଗୋଟେ ଗୋଟିକିଆ ରୁମ । ସେଇଟା ପ୍ରଥମ ମହଲାରେ ଗୋଟାଏ କୋଣକୁ । ବେଶ୍ ଶାନ୍ତ ପରିବେଶ । ସବୁ ନିରବତା ଯେମିତି ସେଇଠି ଠୁଳ ହୋଇଛି । ରୁମ୍ ସାମନାରେ ଖୋଲା ଛାତ । ଛାତ ତ ନୁହେଁ ଗୋଟାଏ ଛୋଟ ଫୁଲ ବଗିଚା । ଏତେ ଫୁଲ ସେଠି ? ଗୋଟାଏ ପାଖକୁ ଗୋଟାଏ ଦୋଳି-ଲତା ଓ କୁଞ୍ଜ ଭିତରେ । ଜଣେ ଦି'ଜଣ ସେଠି ବସି ଚା ଖାଇବା ସହିତ ଅନେକ ଦୂର ପର୍ଯ୍ୟନ୍ତ ବିସ୍ତାରୀ ଯାଇଥିବା ନାଗାଲ୍ୟାଣ୍ଡର ରୂପ ରାଶିକୁ ଉପଭୋଗ କରିପାରିବେ ।

ସେଇ ଶିପ୍ରାକୁ ମୁଁ ତା' ପରଠୁଁ ଆଉ ଦେଖି ନାହିଁ । ମୁଁ ସେ ଥର ଗେଷ୍ଟ ହାଉସ୍‌ରେ ପହଞ୍ଚିଲି ଠିକ୍ ରାତି ନ'ଟାରେ । କେୟାର ଟେକର ଆସି ନମସ୍କାର କଲା । କହିଲା, 'ମେଡମ୍ ଏଇ ମାତ୍ର ବାହାରି ଗଲେ ।'

ମୁଁ ଆଶ୍ଚର୍ଯ୍ୟ ହେଲି । ଏଇ ସମୟରେ ସେ ତ କେବେ ବି ଯାଏନା । ତା'ଛଡ଼ା ମୋର ଆସିବାର ଥିଲେ ସେ ପ୍ରଶ୍ନ ଉଠେନାହିଁ । ସେ ପ୍ରଥମେ ମୋ କଥା ବୁଝେ ଏବଂ ତା'ପରେ ଅନ୍ୟକଥା ।

ମୋତେ ସେତେବେଳକୁ ଖୁବ୍ ଭୋକ ହେଉଥିଲା । ମୁଁ ତାକୁ କହିଲି, 'ହଉ ଠିକ୍ ଅଛି ତମେ ଆଗ ଖାଇବାର ବ୍ୟବସ୍ଥା କର । ମୁଁ ଚେଞ୍ଜ କରିଆସୁଚି ।'

ସେ କହିଲା, 'ସାର ଯାହା ଅଛି ମୁଁ କରି ଦେଉଚି । କେବଳ ଅଣ୍ଡା, ପାଉଁରୁଟି, ଦୁଧ ଓ ସାମାନ୍ୟ କିଛି ଫଳ ମଧ ଅଛି । ଗତ କାଲି ଏଠି ବନ୍ଦ ପାଳିତ ହୋଇଯାଇଚି । ଆଜି ବଜାରରେ କିଛି ମିଳିଲାନି ।'

ମୁଁ ଟିକେ ବିରକ୍ତ ହେଲି- 'ମୋର ଆସିବା ଖବର ପାଇ ନଥିଲ କି ?'

'ସାର୍ ଖବର ମିଳିଛି କିନ୍ତୁ ମେଡମ୍ ମଧ ଭୁଲିଗଲେ କି କ'ଣ କେଜାଣି । ମୋତେ କିଛି କହିଲେନି ।''

କଥାଟା ମୋତେ ଆହୁରି ଆଶ୍ଚର୍ଯ୍ୟାନ୍ୱିତ କରି ଦେଲା । ସେ ଭୁଲି ଗଲା ? ଏକଥା କେମିତି ସମ୍ଭବ ? ଏଇ ସେଦିନ ସେ ମୋତେ ବହିଟି ଦେଇଥିଲା । ନା, ସେ କଥା ମୋଟେ ସମ୍ଭବ ହୋଇ ନପାରେ । ତେବେ କ'ଣ ସେ ଅସୁସ୍ଥ ? ଘରେ କେହି ଅସୁସ୍ଥ ? କିନ୍ତୁ ସେପରି ମଧ କେବେ ହୋଇନାହିଁ । ସେ ନିଶ୍ଚୟ ମୋତେ ଅପେକ୍ଷା କରି ଥା'ନ୍ତା ।

କଥାଟା ମୋତେ ଦ୍ୱନ୍ଦ୍ୱରେ ପକାଇଦେଲା । ଭୋକର ଯନ୍ତ୍ରଣାଟା ମୋତେ ସେତେବେଳେ ଯେତେ ବାଧୁ ନଥିଲା, ବାଧୁଥିଲା ତା'ର ଅସ୍ୱାଭାବିକ ଅନୁପସ୍ଥିତି । ମୋର ଅଜାଣତରେ ମୁଁ ଯେ କେତେ ପରିମାଣରେ ତା ଆଡ଼କୁ ଆଉଜି ଯାଇଚି ସେ କଥା ସେଇଦିନ ମୁଁ ଅନୁଭବ କରି ପାରୁଥିଲି ।

ମୁଁ ରୁମ୍ ଭିତରକୁ ଗଲି । ମୋତେ ଲାଗିଲା ସବୁ ଯେମିତି ଅସଜଡ଼ା ହୋଇ ପଡ଼ିଚି । ମୁଁ ଲୁଗା ବଦଳେଇଲି । ଭାବିଲି ଯଦି ତା'ର ଘର ଠିକଣା ମୋତେ ଜଣାଥାଆନ୍ତା ତେବେ ଯାଇ ଥରେ ବୁଲି ଆସନ୍ତି । କିନ୍ତୁ ସେ କଥା ବି ତ ସମ୍ଭବ ନୁହେଁ ।

ସେଦିନ ରାତିଟା ମୁଁ ବଡ଼ କଷ୍ଟରେ କଟାଇଲି । ମୋଟେ ଶୋଇ ପାରିଲିନି । ସକାଳେ ଉଠି ଭାବିଲି, କେଆର ଟେକରକୁ ପଚାରିବି କି ତା'ର ଠିକଣା ? ତା'ର ଟେଲିଫୋନ୍ ଅଛି କି ? ନମ୍ବର ?

ସେତକ ମଧ ପାରିଲନି । କେମିତି ପଚାରିବି ? କାହିଁକି ? ଅନେକ ଗୁଡ଼ାଏ ଅବୁଝା ପ୍ରଶ୍ନ ମୋତେ ବ୍ୟସ୍ତ କରି ପକାଉଥାଏ । ବୁଝିପାରୁ ନଥାଏ । ମୁଁ ସେଥିରୁ କେମିତି ମୁକ୍ତି ପାଇବି ।

ଚା' ପିଉ ପିଉ ମୁଁ ଡ୍ରାଇଭରକୁ ଡାକିଲି ଏବଂ କହିଲି- 'ଆମେ ଏବେ ଚାଲିଯିବା ଗାଡ଼ି ବାହାର କର ।'

ସେ ଆଶ୍ଚର୍ଯ୍ୟ ହେଲା ବୋଧେ । କହିଲା 'ଆଜି ଏଠି ରହିବେ କହୁଥିଲେ ।'

'ମନେ ନଥିଲା । ସେଠି ଅନେକ କାମ ଛାଡ଼ି ଆସିଚି ।'

ଆମେ ବାହାରିପଡ଼ିଲୁଁ । ପ୍ରାୟ ଦୁଇଶହ କିଲୋମିଟର ଯିବାକୁ ହେବ । ଗାଡ଼ିକୁ ସିନା ଟିକେ ରେଷ୍ଟ୍ ଦେଇଥିଲେ ହୋଇଥାଆନ୍ତା । ଗାଡ଼ିଟା ହଠାତ୍ ରାସ୍ତାରେ ଖରାପ ହୋଇଗଲା । ଯାଃ, ଦୁର୍ଯୋଗ ଏମିତି ଆସେ ।

ଘରେ ପହଞ୍ଚିଲା ବେଳକୁ ଦିନ ତିନିଟା ପାଖରେ । ସ୍ତ୍ରୀ ମୋତେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ, କହିଲେ- 'ଆରେ ତମ ପୋଗ୍ରାମ କ'ଣ ଏଡ୍‌ଭାନ୍ସ ହୋଇଗଲା ? ତମର ତ ଆସନ୍ତା କାଲି ସନ୍ଧ୍ୟାକୁ ଆସିବାର ଥିଲା ।'

ମୁଁ କିଛି କହିଲିନି । ପଙ୍ଖାଟାକୁ ଖୋଲି ଦେଇ ବସିପଡ଼ିଲି । ଡ୍ରାଇଭର ଆଣି ସୁଟକେଶ ରଖିଦେଇ ଗଲା । ମୋ ସ୍ତ୍ରୀ ମୋତେ ଦେଖିଲେ ଏବଂ କହିଲେ 'ଆରେ ତମେ ତ ଖାଇ ନଥିବ ? ଯାଅ, ଉଠ ।' ସେ ହାତରୁ ପେପରଟା ଛଡ଼େଇ ନେଲେ ଏବଂ କହିଲେ, 'ମୁହଁ ହାତ ଧୋଇ ଆସ । ମୁଁ ବାଢୁଚି ।' ସେ କିଚେନ୍ ଆଡ଼କୁ ଚାଲିଗଲେ ।

ମୁଁ ତାଙ୍କୁ ଦେଖୁଥିଲି । ମୋ ପାଇଁ ତାଙ୍କ କାତରତାକୁ ଦେଖୁଥିଲି । ମୁଁ ମଧ ଦେଖୁଥିଲି ଦୁଇଟି ନାରୀ ସେମାନଙ୍କର ଯୁଗ ଯୁଗର ରହସ୍ୟକୁ ନେଇ ମୋ ଆଗରେ ଛିଡ଼ା ହୋଇଛନ୍ତି । ଦୁଇଟି ମାନବିକ ସତ୍ୟର ମହିମା ମଣ୍ଡିତ ରାଜମୁକୁଟ ପାଖରେ ମଣିଷଟି କେତେ ଅକିଞ୍ଚନ ଓ କେତେ ବଶମ୍ବଦ ସତେ ? ସେଇ ଜାଗତିକ ରହସ୍ୟର ଇନ୍ଦ୍ରଜାଲ ଭିତରେ ମୁଁ ଏକାନ୍ତ ଅସହାୟ ଭାବରେ ଘୂରି ବୁଲୁଥିଲି ।



ମୁଣ୍ଡମାରୀ- ୨୦୦୧

# ଝରକା

ବେଡ଼ରୁମର ଝରକାଟା ଖୋଲି ଦେଲା ମାତ୍ରେ ପ୍ରଥମେ ନଜରରେ ପଡ଼େ ତାଙ୍କ ଘରର ଡାଇନିଂ ରୁମ । ତାଙ୍କ ଡାଇନିଂ ଚେୟାର, ଟେବୁଲ, ଟେବୁଲ ଉପରେ ସୁନ୍ଦର ସୁନ୍ଦର ରଙ୍ଗର ଫୁଲ ସହିତ ଫୁଲଦାନୀ । ତା ପାଖକୁ ଲାଗିଥାଏ ସସ୍‌ର ବୋତଲ । ଜାମ୍, ବଟର ଏବଂ ଆଉ କିଛି, ସୁନ୍ଦର କାଚ ଗ୍ଲାସ ଓ ପାଣି ବୋତଲ । ତାଙ୍କ କାନ୍ଥରେ ଝୁଲୁଥାଏ ମଡ଼ର୍ଣ୍ଣ ଆର୍ଟ କେତୋଟି । ସେଥିରୁ ଗୋଟାଏ ପୂରା ଅଂଶ ଦେଖାଯାଏନି । ତାଙ୍କ ଝରକାର କାଚ ଅତି ସ୍ୱଚ୍ଛ । ପରଦା ପଡ଼ି ନଥିଲେ ସବୁ ଦେଖାଯାଏ ।

ଏବେ ମୁଁ ମୋ ନିଜ କଥା କହିବି । ମୁଁ ଚନ୍ଦ୍ରରାୟ । ବୟସ ତେତିଶ । ବିବାହ କରିନି ଅର୍ଥାତ୍ କରିବାକୁ ସୁଯୋଗ ପାଇନି । ତେବେ ସୁଯୋଗ ଯେ ମୋଟେ ଆସିନି ସେ କଥା ନୁହେଁ । ବେଳେବେଳେ ପ୍ରସ୍ତାବ ଆସିଚି ଏବଂ ମନକୁ ମନ ଲେଉଟିଯାଇଚି । ଆଉ କେତେବେଳେ ମୁଁ 'କହିବି' କହି ସମୟ ଟାଳି ଦେଇଚି । ଏସବୁ କେବଳ ଏଇଥିପାଇଁ ଯେ ମୋର ଚାକିରି କିଛି ନାହିଁ କହିଲେ ଚଳେ । ଅର୍ଥାତ୍ ସବୁବେଳେ ପ୍ରଥମ ଶ୍ରେଣୀରେ ପାଶ୍ କରି ପି.ଏଚ୍.ଡ଼ି କଲା ପରେ ମଧ ଦୀର୍ଘ ପାଞ୍ଚବର୍ଷ କାଳ ଯେତେବେଳେ ଚାକିରିଟିଏ ନ ମିଳିଲା ସେତେବେଳେ ବିଧବା ମାଆର ସଯତ୍ନ ସଞ୍ଚିତ ଗହଣାତକ ଯାହାକୁ ସେ ଭଉଣୀ ବାହାଘର ପାଇଁ ରଖିଥିଲା, ତାକୁ ବନ୍ଧା ପକେଇ ସେଇ ଟଙ୍କାକୁ ଡ଼ୋନେସନ ଦେଇ ଗୋଟିଏ ପ୍ରାଇଭେଟ୍ କଲେଜରେ ଏବେ ଅଧାପକ ଚାକିରିଟିଏ ପାଇଚି । ଦରମା ମାସକୁ ପାଞ୍ଚଶହ । ମାସକର ଦରମା ତିନିମାସରେ ମିଳେ । ସ୍ଥାୟୀ ହେବାକୁ ଦଶବର୍ଷ ଖଣ୍ଡେ ଲାଗିଯିବ ବୋଲି କହୁଚନ୍ତି । ସେଇ ଆଶାରେ ମୁଁ ବସିଛି । ହୋଟେଲରେ ଖାଉଚି । ହୋଟେଲବାଲା ବାରମ୍ବାର ତାଗିଦ୍ କରେ । ମିଲ୍ ବନ୍ଦ କରି ଦେବ କହେ । ଘର ମାଲିକ ଉପରେ ରହୁଚି । ମାଲିକ ମଧ ବାରମ୍ବାର ଆସେ । ତେବେ ସେମିତି ବ୍ୟସ୍ତ କରେନା । ଭଲ ଲୋକଟାଏ । ଗାଁରେ ମାଆ ଓ ଖୁବ୍ ଶୀଘ୍ର ବାହା ହେବାକୁ ଅପେକ୍ଷା କରିଥିବା ସାନ ଭଉଣୀ ।

ମୁଁ ଝରକା ଖୋଲି ଦେଲି । ମୋ ଝରକାରେ ପରଦା ନଥାଏ କି କାଚ ନଥାଏ । ତେଣୁ ମୁଁ ଝରକା ଖୋଲେ । ଖୋଲିବାକୁ ବାଧ୍ୟ । ବାହାରର ଥଣ୍ଡା ପବନ ଟିକିଏ ପାଇବାକୁ ହେଲେ ଉଠନ୍ତା ସୂର୍ଯ୍ୟର କିରଣରୁ ଚିମୁଟାଏ ଦେହରେ ନେସିବାକୁ ହେଲେ ମୁଁ ଝରକା ଖୋଲିବାକୁ

ବାଧ । ଆଉ ଝରକା ନଖୋଲିଲେ ? ନ ଖୋଲିଲେ ନିବୁଜ କାରାଗାର । କିଟିମିଟି ଅନ୍ଧାର ଏବଂ ରୁନ୍ଧି ହେଇ ଯାଉଥିବା ବାଷ୍ପ ହିଁ ହୁଏ ଜୀବନର ସାଥୀ ।

ମୁଁ ଝରକା ଖୋଲି ଦେଲା ମାତ୍ରେ ସେ ପାଖ ଝରକାର ଦୁଧ ଫେଣର ମୁଲାୟମ୍ ପରଦାଟିକୁ ଆସ୍ତେ ଆସ୍ତେ ଗୋଟାଏ ଆଉଟା ସୁନାର ହାତ ଟାଣି ନେଇଯାଏ ଗୋଟାଏ ପାଖକୁ ଏବଂ ତାପରେ ହାତ ସାଥୀରେ ପରଦା ପାଖକୁ ଲାଗି ଆଖି ପହଁରିଯାଏ ମୋ ଉପରେ । ଗୋଟାଏ ମୁହୂର୍ତ୍ତର ସତର୍କ ସନ୍ତରଣ ଭିତରେ ମୁଁ ଜଡ଼ସଡ଼ ହେଇଯାଏଁ । ଝାଳରେ ଗୁମ୍‌ସୁମ୍ ହେଇଯାଏଁ । କେମିତି, କଅଣ ଓ କାହିଁକିର ଅସୁମାରୀ ପ୍ରଶ୍ନର ଜାଲ ଭିତରେ ମୁଁ ଅସହାୟ ଭାବେ ଧରାପଡ଼ି ଯାଇଥିବା ଦୁର୍ବଳ ମାଛଟିଏ ପରି କାଲେଇ ପଡ଼େ ।

ନିମିଷକ ଭିତରେ ମୁଁ ପୁଣି ନିଜକୁ ସଜାଡ଼ି ନିଏ । ବାଘ ମୁହଁରୁ ଖସି ଆସିଥିବା ଘାଏଲ ଶିକାରଟିଏ ପରି ସନ୍ତର୍ପଣରେ ମୁହଁ ଫେରେଇ ନେଇ ଘର କଣକୁ ଯାଇ ସୁରେଇରୁ ପାଣି ଆଣି ପିଏଁ । ପେଟପୂରା ପାଣି ପିଇ ସାରିଲା ପରେ ପକେଟରେ ହାତ ମାରେ । ନା, ଆଉ ଚା ନ ପିଇଲେ ମଧ ଚଳିବ । ପାଞ୍ଚଟା ବେଳେ କଲେଜ ଫେରନ୍ତା ଚା କପେ- ମୋ ପାଇଁ ପରିଶ୍ରମ ଜନିତ କ୍ଳାନ୍ତି ଅପନୋଦନର ଆମୋଦ ନୁହେଁ- ଏକ ନ୍ୟୁନତମ ଆବଶ୍ୟକତା ।

ମୁଁ ବିଛଣାରେ ଶୋଇପଡ଼େ । ଶୋଇପଡ଼େ ଛାତକୁ ଚାହିଁ । ଖୋଲା ଝରକା ଦେଇ ଆକାଶକୁ ଚାହିଁ । ଶ୍ରାବଣର ମେଘ, ଅଶିଣର ଜହ୍ନ, ବସନ୍ତର ରାସୋତ୍ସବ ଏମାନେ ମୋତେ ଚାହିଁ ଆଖି ମିଟିକା ମାରନ୍ତି । ଏମାନଙ୍କୁ ଦେଖି କାନଥରା ଶୀତରେ ବି ମୋ ଭିତରେ ବୈଶାଖର ଝଡ଼ ଉଠେ । ଊର୍ଦ୍ଧ୍ୱଶ୍ୱାସୀ ହେଇ ମୁଁ ବିଛଣାରେ ଛଟପଟ ହୁଏ ।

ମା ଚିଠି ଦେଇଚି । ପୋଷ୍ଟକାର୍ଡ଼ଟିଏ । ଖୋଲାଚିଠି । ଲେଖିଚି- କେବେ ଆସିବୁ । ପୂଜାର ଦୁଇ ଚାରିଦିନ ପୂର୍ବରୁ ଆସିବୁ । ଅନେକ କଥା ତ ଲେଖିବାର ଅଛି । କିନ୍ତୁ ଲେଖିଲେ କଅଣ ହେବ । ତୁ ବା କଅଣ କରିପାରିବୁ । ତଥାପି ପୂଜାକୁ ନିଶ୍ଚୟ ଆସିବୁ । ଗାଁରେ ସମସ୍ତେ ଆସୁଚନ୍ତି । ତୁ ଆସିବୁନି ? ମିନିଟ ତୋ ଆସିବାକୁ ଅପେକ୍ଷା କରି ବସିଚି । ସେଥର ଗଲାବେଳେ ତୋତେ କଅଣ କହିଥିଲା ପରା । ମୋତେ ଖାଲି ମନେ ପକେଇ ଦେବାକୁ କହୁଚି । ବାପାଟା ପରା । ମୁଁ ତ ତୋତେ କିଛି ଆଣିବାକୁ କହୁନି । ତେଣୁ ନିଶ୍ଚୟ ଆସିବୁ ।

ଝରକା ସେ ପଟୁ ପାଟି ଶୁଭିଲା । 'ଏୟ, କଅଣ କରୁଛୁ ? ଗଲୁ ବଗିଚାରୁ ଫୁଲ ଆଣିବୁ ।' ସେଇ ପରିଚିତ ସ୍ୱର ।

ମୁଁ ଚମକିପଡ଼େଁ । ବଡ଼ କଅଁଳିଆ ମିଠା ସ୍ୱର ଏମିତି ବେଳେବେଳେ ଶୁଣାଯାଏ । ଆବଶ୍ୟକ ଥାଉ କି ନଥାଉ । ସ୍ୱରଟା ମୋ ଝରକାରେଲିଂ ଡେଇଁ କୋଠରି ଭିତରକୁ ପଶିଆସେ, ବେଳ ଅବେଳରେ ଗେଟ୍ ଖୋଲା ଥିଲେ ଲନ୍‌ର କଅଁଳ ଘାସ ଦେଖି ବୁଲା ଗାଈ କୁଦା ମାରି ଭିତରକୁ ପଶି ଆସିଲା ପରି ।

ଚିଠିଟାକୁ ସେମିତି ହାତରେ ଧରି ମୁଁ ବିଛଣାରୁ ଉଠି ପଡ଼େ । ଝରକା ପାଖକୁ ଆସିଲା ବେଳକୁ ଏବେ ଏବେ ଅଙ୍କାଯାଇଥିବା ଛବିଟିଏ ଧୀରେ ଧୀରେ ପରଦା ପାଖରେ ଆତ୍ମଗୋପନ କରେ । ପାତଳ ପରଦାରେ ଆଙ୍ଗୁଳି ଏବେବି ଅଟକି ରହିଚି । ଚମ୍ପାକଢ଼ିର ଚାରିଟା ଆଙ୍ଗୁଳି । ବେଶି ସରୁ ନୁହେଁ କି ମୋଟା ନୁହେଁ । ନଖରେ ମେରୁନ୍ ରଙ୍ଗର ପଲିସ । ବେଶ ସ୍ୱଚ୍ଛ ଓ ପରିଷ୍କାର ।

ବୁଡ଼ି ଯାଉଥିବା ସୂର୍ଯ୍ୟଟା ଘରର ଛାତ ଉପରେ ଅଟକି ଯାଇଚି । ମୁହଁ ଶେତା ପଡ଼ିଯାଇଚି । ଅନେକ ଦିନର ମ୍ୟାଲେରିଆ ରୋଗୀ ପରି ।

ମୋ ହାତରେ ମୋ ମାଆର ଚିଠି । ଝରକା ସେ ପଟେ ଚାରିଟା ଆଙ୍ଗୁଠି ସେମିତି ଅଟକି ରହିଚି । ପରଦାର ଢେଉ ଢେଉକା ଭାଙ୍ଗ ଭିତରେ ଛବିଟା ଠିଆ ହୋଇ ରହିଚି । ମଣିଷର ଛାଇ । ଦେଖି ହୁଏନି ମଣିଷକୁ । ଛବିଟା ତାର ଅବସ୍ଥିତି ଜଣେଇ ଦଉଚି ମାତ୍ର । ଦୁଇଟା ଆଖିରେ ସମର୍ପଣର ଭଙ୍ଗୀ । କିନ୍ତୁ ଭାଷା ପଢ଼ି ହୁଏନି । ସବୁ ଅସ୍ପଷ୍ଟ । ସବୁ ଅବୁଝା ।

ମୋ ହାତରେ ଚିଠି । ମୁଁ ବିଛଣାକୁ ଫେରି ଆସିଲି । ମୋ ଝରକା ସେମିତି ଖୋଲାଥାଏ । ଚିଠିରେ ମାଆର ମୁହଁ । ମୋ ଭଉଣୀର ଛବି । ଛବି କଥା କହୁଚି । ମାଆକୁ ଲୁଚେଇ କହୁଚି । ମୋର ଶାଢ଼ି ନାହିଁ । ପୂଜାକୁ ଆଣିବ । ସମସ୍ତେ ଏଠି ପିନ୍ଧିବେ । ମୋ ପାଇଁ ସାଧାରଣ ଶାଢ଼ିଟିଏ ହେଲେ ବି ଆଡ଼କୁ ପାଇବ । ମୁଁ ଚଳେଇ ନେବି । ଟିକିଏ ରହି ସେ ପୁଣି କହିଲା, ଟିକିଏ ନରମ ଗଳାରେ, ଯଦି ତୁମର ପଇସା ହୁଏ, ନହେଲେ ବି ଚିନ୍ତା ନାହିଁ । ତା ଓଠରେ ଚେନାଏ ମଇଳା ହସ ।

ମୁଁ ବିଛଣାରୁ ଉଠି ପଡ଼ିଲି । ପୁଣି ଥରେ ଝରକା ପାଖକୁ ଗଲି । ସେଠାକୁ ଯିବାକୁ ମୋର ଦରକାର ଥିଲା କି ନା କେଜାଣି । ଆବଶ୍ୟକ ଥାଏ କି ନଥାଏ ସେଇଟା ଅଲଗା କଥା । ବେଳେ ବେଳେ ଆବଶ୍ୟକତା ଓ ଅନାବଶ୍ୟକତା ଦୁହେଁ ନିଜ ଭିତରେ ସାଲିସ କରି ନିଅନ୍ତି । ତେଣୁ ମଣିଷ ଦ୍ୱନ୍ଦ୍ୱରେ ପଡ଼ିଯାଏ ।

ସମ୍ପୂର୍ଣ୍ଣ ଛବିଟା ପୁଣି ଥରେ ପରଦା ପଛପଟକୁ ଚାଲିଗଲା । ଏଥର ଯିବା ପୂର୍ବରୁ କିଛି ମେସେଜ ଛାଡ଼ି ଦେଇଗଲା । କଅଣ ସେ ମେସେଜ । କୁହା ହୋଇନଥିବା ଭାଷାରେ ମଧ ଅନେକ କଥା ଥାଏ । ଅନେକ କଥାର ମେସେଜ ଗୋଟିଏ ଶବ୍ଦରେ ବି ଥାଏ । ବିଦ୍ୟୁତର ତରଙ୍ଗ ହିଁ କେବଳ ଶବ୍ଦର ତରଙ୍ଗକୁ ବୋହି ନେଇପାରେ । ତିନିମାଇଲର ଦରମା ମିଳି ନଥିବା ଅଧାପକ ଚନ୍ଦ୍ରରାୟ ଦିହରୁ ତରଙ୍ଗ ଓ ଶବ୍ଦକୁ ଶୋଷି ନେଇଥିଲେ ତା ମାଆର ଭାଷା ଓ ଭଉଣୀର ଆଶା ଓ ଆକାଂକ୍ଷାମାନେ ।

ମୋର ମନେପଡ଼ିଲା ଦୁର୍ଗୋତ୍ସବର ଗାଁ । ସାଙ୍ଗସାଥୀ । ପିଲାକାଳ । ନଈବାଲି । ନଈ ସେ ପାରିରେ ଅଶିଣର ଖଣ୍ଡିଖଣ୍ଡିଆ ମେଘ ଦିଗ୍‌ବଳୟ ଦେହରେ ଝୁଲିପଡ଼େ ଗୋଟାଏ ମୋଟା ହାତୀର ଶୁଣ୍ଢପରି । ବାଲିଘର ତୋଳୁଥିବା ସାଙ୍ଗଟାଏ ସେଦିନ ପାଟି କରି ଉଠିଥିଲା, "ହେଇ ଦେଖ, ଐରାବତ ପାଣି ପିଉଚି ସମୁଦ୍ରରୁ ।

ଐରାବତ ସମୁଦ୍ରରୁ ପାଣି ପିଉଚି ?"

"ଆଉ କୋଉଠୁ ପିଅନ୍ତା ? ନଈରୁ ପିଇଲେ ତ ଥରକେ ସରିଯିବ ।" ସେ ହୋ ହୋ ହେଇ ହସି ଉଠିଲା ।

ମୁଁ ସେଦିନ ତା କଥାରେ କେତେ ଯୁକ୍ତି ଅଛି କି ନା ସେ କଥା ଚିନ୍ତା ନକରି ହସି ଦେଇଥିଲି ।

ସେପଟ ଝରକାରେ ପରଦାରୁ ଚମ୍ପାକଢ଼ିର ଆଙ୍ଗୁଳିଗୁଡ଼ିକ କେବେଠାରୁ ଲିଭିଗଲାଣି ।

ମୁଁ ଫେରି ଆସିଲି ବିଛଣାକୁ । ଏ ଘରେ ମୋର ଏକମାତ୍ର ସଙ୍ଗୀପାଖକୁ । ଶୋଇପଡ଼ି କାନ୍ଥକୁ ଅନେଇଲି । କୋଉ ଦିନରୁ କୋଣାର୍କର ନର୍ତ୍ତକୀକୁ ନେଇ କ୍ୟାଲେଣ୍ଡରର ପୃଷ୍ଠାଟିଏ ମୋ ଆଗରେ ଝୁଲି ରହିଚି । ଯୁଗ ଯୁଗର କ୍ଷୁଧା ନେଇ ନର୍ତ୍ତକୀଟି ସେମିତି ଅନେଇ ରହିଚି କୋଉ ଏକ ଅଦୃଶ୍ୟ ଇଙ୍ଗିତକୁ ଅପେକ୍ଷା କରି । ଆଖିରେ ତାର ଅଜସ୍ର ଆବେଦନ । ପର୍ଯ୍ୟାପ୍ତ ନିମନ୍ତ୍ରଣ ।

ଆସନ୍ତାକାଲିର ତାରିଖ ଉପରେ ମୋ ଆଖି ଅଟକିଗଲା । ୨୭ ଅକ୍ଟୋବର, ମୋର ଜନ୍ମଦିନ । ଏଥର ତେତିଶ ଟପି ଚଉତିରିଶ ଆରମ୍ଭ ହେବ । ବର୍ଷ ପରେ ବର୍ଷ ଗଡ଼ି ଯାଉଚି । ସେ ଅପେକ୍ଷା କରେନା । ତାକୁ ଡର କାହିଁ ଅପେକ୍ଷା କରିବାକୁ ? ତମେ ମାସକର ଦରମା ତିନିମାସରେ ପାଇଲେ ତାର କିଛି ଯାଏ ଆସେନା । ତାର ଗତି ପଥ ଆଜି ଯେମିତି ହଜାରେ ବର୍ଷ ପୂର୍ବରୁ ବି ସେମିତି ଥିଲା । ବରାବର ସେମିତି ରହିଥିବ ।

ମୁଁ ଗଣିଦେଲି । ମାସ ସରିବାକୁ ଆହୁରି ପାଞ୍ଚଦିନ ବାକିଅଛି । କଲେଜରେ ଛୁଟି ପଡ଼ିବାକୁ ଆଉ ଦୁଇଦିନ ବାକି ଅଛି । ପୂଜା ଆରମ୍ଭ ହେବାକୁ ଆଉ ଚାରିଦିନ ବାକି ଅଛି । କିନ୍ତୁ ଦରମା ମିଳିବାକୁ ? ତାର ଉତ୍ତର କ୍ୟାଲେଣ୍ଡରରୁ ମିଳିବ ନି । ପ୍ରିନ୍ସିପାଲ ଆଜି କହିଲେ "ପୂଜା ପାଇଁ ସମସ୍ତଙ୍କୁ କିଛି କିଛି ଦିଆଯିବ ।"

"କିଛି ମାନେ ?" ଆମ ଭିତରୁ ଜଣେ ପଚାରିଲେ ।

"କିଛି ମାନେ ଘରକୁ ଯିବା ଆସିବା ଖର୍ଚ୍ଚ ।" ସେ ହସି ହସି କହିଲେ "ପୂଜା ସେଲିବ୍ରେସନ ପାଇଁ ଏଇ କିଛିଟା କମ କଥା ନୁହେଁ ।

ସେ ଯେତିକି ହସୁଥାଆନ୍ତି ମୋ ଭିତରଟା ସେତିକି କୋରି ହେଇ ଆସୁଥାଏ । ସେ ସ୍ଥାନଟା ତାଙ୍କ ଅଫିସ ହେଇ ନଥିଲେ ମୁଁ ହୁଏତ କାନ୍ଦି ପକେଇ ଥାଆନ୍ତି, ହେ ଭଗବାନ, ଅଧ୍ୟାପକ ଚନ୍ଦ୍ରରାୟ ତମ ସୃଷ୍ଟି ସର୍ଜନାର ଏକ ଅଭିଶାପ । ତମେ ଯଦି ତାକୁ ଫୁଟ୍‌ପାଥ୍‌ର ଜୀବଟିଏ କରିଥାଆନ୍ତ ତେବେ ସେ ହୁଏତ କିଛି ନହେଲେ ବି ଭିକମାଗି ପେଟପୋଷି ପାରୁଥାଆନ୍ତା । ତମେ ଯଦି ତାଙ୍କୁ ସାଧାରଣ ଶିକ୍ଷାଦୀକ୍ଷାର ଚତୁର ମଣିଷଟିଏ କରି ଥାଆନ୍ତ

ତେବେ ସେ କିଛି ନ ହେଲେ ରାଜନୀତି କରି ସାମ୍ରାଜ୍ୟ ଶାସନ କରି ପାରୁଥାଆନ୍ତା । କିନ୍ତୁ ଏସବୁ ନ କରି ତମେ ତାକୁ ଏ ଜ୍ଞାନଗାରିମା ଦେଲ କାହିଁକି ?

ଆଉ ମୁଁ ନିରୀହ ଅଧ୍ୟାପକଟିଏ ନ ହୋଇ ଯଦି ଉଦ୍‌ଭ୍ରାନ୍ତ ଯୁବକଟିଏ ହୋଇଥାଆନ୍ତି ତେବେ ହୁଏତ ସେତେବେଳେ ପ୍ରିନ୍ସିପାଲଙ୍କ କହୁଥିବା ମୁହଁର ଥୋମଣି ଭାଙ୍ଗି ଦେଇ ତାଙ୍କ ଛାମୁଦାନ୍ତ ଦି'ଟାକୁ ଉଡ଼େଇ ଦେଇଥାଆନ୍ତି ।

କିନ୍ତୁ ମୁଁ ସେ ସବୁ କିଛି କରିପାରିଲିନି । ମୁଁ ଖାଲି ନିର୍ବାକ ନିସ୍ପନ୍ଦ ହୋଇ ତାଙ୍କୁ ଅନେଇ ରହିଲି ସେ ହସ ହସ ମୁହଁରେ ରୁମରୁ ବାହାରି ଯାଇ କାରରେ ବସିବା ପର୍ଯ୍ୟନ୍ତ । ଦୁଃଖ, କ୍ରୋଧ ଓ ଅସହାୟତାର ଗୋଟାଏ ବିରାଟ ଉଦ୍‌ଗୀରଣକୁ ମୁଁ ଅନେକ କଷ୍ଟରେ ଭିତରେ ଚାପି ନେଇଥିଲି ।

ମୁଁ ତକିଆ ଉଠେଇ ତା ତଳକୁ ଦେଖୁଥିଲି । ନାଃ, ବେଳ ଅବେଳରେ ମୁଁ ଚାରଣା/ଆଠଣାଟେ ସେଇଠି ପକେଇ ଦେଇଥାଏ । ଆଜି ସେ ଜାଗା ମଧ୍ୟ ଏକଦମ୍ ଖାଲି । ମୋର ପୁଣି ନଜର ପଡ଼ିଲା ୨୭ ତାରିଖ ଉପରେ । ତାରିଖଟା ମୋତେ ଯେମିତି ଖତେଇ ହେଉଚି । କହୁଚି, ହେଇ ଦେଖ୍ ମୁଁ ଆସ୍ତେ ଆସ୍ତେ କେମିତି ଖସି ଖସି ଚାଲି ଯାଉଚି । ତୁ ମୋତେ ଧରି ରଖି ପାରିବୁ ?

ସଞ୍ଜ ହୋଇ ଆସିଲାଣି । ମୁଁ ବିଛଣାରୁ ଉଠି ପଡ଼ିଲି । ଝରକା ସେ ପାଖର ଆଲୁଅ ଜଳି ଉଠିଲାଣି । କିନ୍ତୁ ଝରକା ବନ୍ଦ ଅଛି । ଘର ଭିତରେ କିଏ କଅଣ କରୁଚି ସେ କଥା ଆଉ ଦେଖାଯାଉନି । ମୁଁ ବୋଉର ଚିଠି, ଭଉଣୀର କଥା, ଝରକା ସେ ପାଖର ଆଖି ଏବଂ ସର୍ବୋପରି ପ୍ରିନ୍ସିପାଲଙ୍କ ହସରୁ ନିଜକୁ ଆଡ଼େଇ ନେବାକୁ ଠିଆ ହେଲି । ଲୁଙ୍ଗି ପିନ୍ଧିଥିଲେ ମଧ୍ୟ ପଞ୍ଜାବିଟେ ଦେହରେ ଗଳେଇ ପକେଇଲି । ବାହାରକୁ ଆସିଲି । ରାସ୍ତା ଡେଇଁଲେ ଚା ଦୋକାନ । କିନ୍ତୁ ସେ ଆଉ ଚା ଦେବ ନାହିଁ । ଦୁଇ ମାସ ହେଲା ପଇସା ଦେଇନି ବୋଲି ସେ ମୁହଁ ଖୋଲି ମନା କରିଦେବା ପୂର୍ବରୁ ମୁଁ ତା ଦୋକାନ ଦେଇ ଆଉ ଯିବାକୁ ସାହସ କରୁନି । ତେଣୁ ଚା ଟିକିଏ ପିଇବାକୁ ହେଲେ ମୋତେ ଛକ ପାର ହୋଇ ଆଉ ଖଣ୍ଡେ ବାଟ ଯିବାକୁ ହେବ । ଯୋଉ ହୋଟେଲରେ ମୁଁ ଭାତ ଖାଏଁ । ସେ ଯାଏ ମୋତେ ଯିବାକୁ ହେବ । ଆଜି ସେ ନିଶ୍ଚୟ ପଇସା ମାଗିବ । ସେ ଜାଣେ କାଲି କଲେଜରେ ଛୁଟି ପଡ଼ିଯିବ । ଆମେ ସବୁ ଘରକୁ ଚାଲିଯିବୁ ।

ତଥାପି ମୁଁ ସେଇ ଆଡ଼କୁ ଚାଲିଥାଏଁ । ସେ ଚା କପେ ଦେବ କିନ୍ତୁ ଅନେକ କୁନ୍ଥେଇଲା ପରେ । ଅନ୍ତତଃ ପକ୍ଷେ ଅନ୍ୟ ପନ୍ଦର କୋଡ଼ିଏ ଜଣଙ୍କୁ ଚା ଦେଇ ସାରିଲା ପରେ ମୁହଁ ତଳକୁ କରି ସେଇ ସମସ୍ତଙ୍କ ସାମନାରେ ପଚାରିବ, ଏ ମାସରେ ମିଳିବ ତ ? ତାପରେ ମୋର ଉତ୍ତର ଶୁଣି ସାରିଲା ପରେ ହୁଏତ କହିବ ଆଉ କେତେ ଦିନ ବା ଜଣେ ଏମିତି ଚଳେଇ ନେଇପାରିବ ?

ଏସବୁ ଅନିବାର୍ଯ୍ୟ କଥୋପକଥନ ସହିତ ଅଭ୍ୟସ୍ତ ଥିବାରୁ ମୁଁ ସେ ହୋଟେଲକୁ ଯିବା ବନ୍ଦ କରିନଥାଏ । ସେ କହେ, ମୁଁ ଶୁଣେଁ ଏବଂ ପୁଣି ଚାଲିଆସେ ।

କାହିଁକି କେଜାଣି ମୋର ଆଉ ହୋଟେଲ ଆଡ଼କୁ ଯିବାକୁ ଇଚ୍ଛା ହେଲାନି । ବୋଧେ ଏଇଥିପାଇଁ ଯେ ଏଇନେ ତା ହୋଟେଲରେ ଅନେକ ଅଫିସ ଫେରନ୍ତା ଚା ପିଉଥିବେ । ସେଠି ଏସବୁ କଥାର ପୁନରାବୃତ୍ତି ଅପେକ୍ଷା ରାତିରେ ଖାଇଲାବେଳେ ନିରୋଳାରେ ବରଂ ଭଲ ହେବ ।

ମୁଁ ଘରକୁ ଫେରି ଆସିଲି । କବାଟ ଖୋଲି ଭିତରକୁ ପଶିଲି ଏବଂ ଲାଇଟ ଜଳେଇ ଝରକା ଖୋଲି ଦେଲି ।

ପୁଣି ସେଇ ମୁହଁ ପବନରେ ଭାସି ଉଠିଲା । ପୁଣି ସେଇ ଚମ୍ପାକଢ଼ିର ଆଙ୍ଗୁଳି । ପୂର୍ଣ୍ଣାବୟବର ଚିତ୍ରଟିଏ ଯେମିତି ଅନେକ ବେଳୁ ଅପେକ୍ଷା କରି ଠିଆ ହେଇଚି । ସେ ଆଖିରେ କହୁଚି କୁଆଡ଼େ ଯାଇଥିଲ ସଞ୍ଜବେଳଟାରେ ! ମୁଁ ଅନେକ ବେଳୁ ତୁମକୁ ଖୋଜୁଚି । ଆମ ଛାତ ଉପରେ ଦେଖୁନ କେମିତି ଜହ୍ନ ଉଠିଚି । ଜହ୍ନର ଫୁଲଗୁଡ଼ା କେମିତି ଆମ ବଗିଚାରେ କୁଢ଼େଇ ହେଇପଡ଼ିଚି । ଆସ, ତୁମେ ସେ ବଗିଚାକୁ ଆସ । ଆମେ ସେଠି ବସିବା, ଜହ୍ନ ସାଥିରେ, ଭସା ମେଘ ସାଥିରେ ଲୁଚକାଳି ଖେଳିବା । ସାରା ରାତି ଆମେ ସେଇଠି ଲନ୍ ଉପରେ କଟେଇ ଦବା, ଆସ, ଏଠି ଆଉ କିଏ ଅଛି ?

ମୁଁ ଚମକି ପଡ଼ିଲି । ମୋ ଭିତରେ ଗୋଟାଏ ଅପୂର୍ବ ଶିହରଣ ମୋର ସର୍ବାଙ୍ଗକୁ ଉଲ୍ଲସିତ କରି ପକେଇଲା । ଗୋଟାଏ ନୂତନ ଆମେଜ ମୋତେ ଆବୋରି ପକେଇଲା । ମୁଁ ଝରକା ଆଡୁ ମୁହଁ ଫେରଇ ଆଣି କାନ୍ଥରେ ଟଙ୍ଗା ହେଇଥିବା ଛୋଟ ଦର୍ପଣ ସାମନାରେ ଠିଆ ହେଇ ନିଜକୁ ଦେଖିଲି । ଦର୍ପଣର ପାଖାପାଖି ସ୍ଥାନରେ କ୍ୟାଲେଣ୍ଡରଟି ଝୁଲୁଥିବାରୁ ମୋର ପୁଣିଥରେ ୨୭ ତାରିଖ ଉପରେ ନଜର ପଡ଼ିଲା । ୩୪ର ସଂଖ୍ୟା କଥା ମନେ ପଡ଼ିଯିବାରୁ ମୋ ଭିତରେ ଗୋଟାଏ ଅହେତୁକ ଅସହାୟତାର ଉର୍ଦ୍ଧ୍ୱଶ୍ୱାସ ମୋତେ ଅସ୍ତବ୍ୟସ୍ତ କରି ପକେଇଲା । ମୋତେ ଲାଗିଲା ମୋ ହୃତ୍ପିଣ୍ଡର ଗତି ହଠାତ୍ ଯେମିତି ବଢ଼ିଯାଉଚି । ଅନେକ ରାସ୍ତା ଦୌଡ଼ି ଆସିଲେ ଯେମିତି ଲାଗେ । ହାଲିଆ ଲାଗେ । ଧଇଁ ସଇଁ ହେଇ ଥକି ପଡ଼େ ।

ବିଛଣା ଉପରେ ମୋ ମାଆର ଚିଠିଟା ସେମିତି ପଡ଼ିଥିଲା । ମୁଁ ତାକୁ ଉଠେଇ ନେଲି । କିଛି ପଢ଼ି ପାରୁନଥିବା ଆଖିରେ ଚିଠିଟିକୁ ମୁଁ ଦେଖୁଥିଲି । ସେ ଅକ୍ଷର ଗୁଡ଼ାକ ମୋ ସାମ୍ନାରେ ଯେମିତି ଆଗ ଅପେକ୍ଷା ଆହୁରି ବଡ଼ ଦେଖା ଯାଉଥିଲେ । ପୋଷ୍ଟକାର୍ଡ଼ଟା ଯେମିତି ଅନେକ ଲମ୍ବା ହେଇଯାଇଥିଲା । ଏଥର ଚିଠିଟାକୁ ମୁଁ ତକିଆ ତଳେ ନରଖି ମୁଣ୍ଡ ପାଖରେ ଥିବା ଡାଏରୀ ଭିତରେ ସେଇ ୨୭ ତାରିଖ ଜାଗାରେ ରଖିଲି । ତାପରେ ଧୀରେ ଧୀରେ ଝରକା ପାଖକୁ ଯାଇ ଅତି ସନ୍ତର୍ପଣରେ ଦୁଇ ହାତରେ ଝରକାଟିକୁ ଟାଣି ଆଣି ବନ୍ଦ କରିଦେଲି ଏବଂ ତାପରେ ଆଲୁଅ ଲିଭେଇ ଆଖିବୁଜି ଶୋଇ ପଡ଼ିଲି ।



କଥା

# କ୍ଲାନ୍ତ

ଜୀବନ ଘର ଭିତରକୁ ପଶିଆସିଲା ଏବଂ ଅମକି ଛିଡ଼ାହୋଇଗଲା । ଘରର ଝରକାଗୁଡ଼ିକ ଖୋଲା ଥିଲା ଏବଂ ସେ ଝରକା ଦେଇ ପର୍ଯ୍ୟାପ୍ତ ଆଲୋକ ଭିତରକୁ ପଶିଆସୁଥିଲା । କାହିଁକି କେଜାଣି, ସେ କୋଠରି ଭିତରେ ଥିବା ଆଲୋକକୁ ମୋଟେ ସହ୍ୟ କରିପାରୁନଥିଲା । ସେ ଭାବୁଥିଲା, ଏଠି ମୋଟେ ଆଲୋକ ନଥାଆନ୍ତା କି ! ଝରକା କବାଟ ସବୁ ବନ୍ଦ ହୋଇ ଥାଆନ୍ତା କି ! ଆଲୋକମାନେ ଏ ଘରର ସୀମା ଡେଇଁ ସେ ପାଖକୁ ପଳାନ୍ତେ କି ! ସେମାନଙ୍କୁ କେହି ତଡ଼ି ଦେଇପାରନ୍ତା କି !

ଜୀବନ ଚାରିଆଡ଼କୁ ଦେଖିଲା । ଝରକା ସେ ପାଖ ରାସ୍ତାରେ ଲୋକମାନେ ଯିବା ଆସିବା କରୁଥିଲେ । ସେମାନଙ୍କ ଭିତରୁ କେହି କେହି ଖୋଲା ଝରକା ଆଡ଼କୁ ଦେଖୁଥିଲେ । ସେ ଝରକା ପାଖରେ ଆସି ଠିଆ ହେବାରୁ ତା' ଦେହରେ ମେଞ୍ଚାଏ ସୂର୍ଯ୍ୟାଲୋକ ତାକୁ ଗାଧୋଇ ଦେଲା । ହଠାତ୍ ଗୋଟାଏ ଅବ୍ୟକ୍ତ ଚିତ୍କାର କରି ଜୀବନ ପଛକୁ ଘୁଞ୍ଚିଗଲା ।

ଆଃ, କେତେ ଯନ୍ତ୍ରଣାଦାୟକ ଏ ଆଲୋକଗୁଡ଼ାକ, ଆଲୋକର ଅଶେଷ ଯନ୍ତ୍ରଣାର ତୀକ୍ଷ୍ଣ କଣ୍ଟାଗୁଡ଼ିକ ଯେମିତି ତାକୁ ଚାରିପାଖରୁ ଘେରି ଆକ୍ରମଣ କରିବାକୁ ଚେଷ୍ଟା କରୁଥିଲେ ଏବଂ ଜୀବନ ସେଥିରୁ ମୁକ୍ତି ପାଇବା ପାଇଁ ପ୍ରାଣପଣେ ଚେଷ୍ଟା କରୁଥିଲା । ସେ ଛଟିପିଟି ହେଉଥିଲା ଏକ ଅସହ୍ୟ ଯନ୍ତ୍ରଣାରେ ।

ଏଥର ଜୀବନ ନିଜ ଦେହକୁ ଦେଖିଲା । ସେ ଦେଖିଲା, ଯେମିତି ଦିନର ଆଲୋକମାନେ ତା' ଦେହରେ ଜୋକ ପରି ଜଡ଼ିଯାଇ ଝାଲୁବାଲୁ ହେଉଚନ୍ତି ଏବଂ ତା' ଶରୀରରେ ରକ୍ତକୋଷଗୁଡ଼ିକୁ ଶୋଷି ପକାଉଛନ୍ତି । ତା ଆଖି ସାମ୍ନାରେ ଏସବୁ ଘଟିଯାଉଥିଲେ ମଧ ସେ ନିଜକୁ ଏଇ ଆକ୍ରମଣ ଜନିତ ଯନ୍ତ୍ରଣାରୁ ରକ୍ଷା କରିପାରୁନଥିଲା ।

ଜୀବନ ସେଦିନ, କାହିଁକି କେଜାଣି, ଆଲୋକକୁ ଭୟ କରୁଥିଲା । ଆଲୋକର ପ୍ରଚଣ୍ଡ ତୀବ୍ରତା ତାକୁ ଯେମିତି ମାରି ଗୋଡ଼ାଉଥିଲା । ସେ ଭାବି ପାରୁନଥିଲା, ସେଥିରୁ କେମିତି ମୁକ୍ତି ପାଇବ, କେମିତି ସେ ନିଜକୁ ବଞ୍ଚାଇପାରିବ ? ଆଲୋକର ସାମନାସାମନି ହେବାକୁ ତା'ର ଯେଉଁ ଶକ୍ତି ଦରକାର, ଯେଉଁ ମାନସିକତା ଆବଶ୍ୟକ, ସେତକ ତା'ଠାରେ ନଥିବାରୁ

ସେ ନିଜକୁ ଗୋଟାଏ ଅଜଣା କଇଁଛର ଶକ୍ତ ଖୋଳପା ଭିତରେ ଲୁଚେଇ ରଖିବାକୁ ଚାହୁଁଥିଲା । ସେ ଦେଖୁଥିଲା, ଆଲୋକମାନେ ଆସ୍ତେ ଆସ୍ତେ ଜୀବନକୁ ଜୀବନବିହୀନ କରି ପକାଉଛନ୍ତି ।

ସେ ଚେୟାରରୁ ଉଠିପଡ଼ିଲା ଏବଂ ଧଡ଼୍ ଧଡ଼୍ କରି ଝରକାଗୁଡ଼ିକୁ ବନ୍ଦ କରିଦେଲା ।

କିନ୍ତୁ ଆଲୋକର ଗତିକୁ ବା ରୋଧିବ କିଏ ? ତା'ର ଗତି ସବୁବେଳେ ଦୁର୍ବାର । ତା'ର ବେଗ, ତାର କ୍ଷୀପ୍ରତା ଅପରିସୀମ । ଅନ୍ଧକାର ବିରୁଦ୍ଧରେ ଆଲୋକର ଜୟଯାତ୍ରା ମଣିଷ ଯୁଗେ ଯୁଗେ ଦେଖି ଆସିଚି । ତେଣୁ ଜୀବନ ଝରକା ବନ୍ଦ କରି ଦେଇ ଚାରିଆଡ଼େ ମୋଟା ପରଦାରେ ଢାଙ୍କିଦେଲେ ମଧ ଆଲୋକର ଗତିକୁ ରୋକି ପାରିଲାନି । ଝରକାର କ୍ଷୁଦ୍ରାତିକ୍ଷୁଦ୍ର ରନ୍ଧ୍ର ବାଟେ, ଛୋଟ ଛୋଟ ଫାଙ୍କ ବାଟେ ଆଲୋକମାନେ ପୂର୍ବପରି କୋଠରି ଭିତରକୁ ଆସିବାକୁ ଲାଗିଲେ ଏବଂ ନିଜର ଅସ୍ତିତ୍ୱକୁ ଜୋର୍ ଜବରଦସ୍ତ ଜାହିର କରିବାକୁ ଲାଗିଲେ ।

ଜୀବନକୁ ସେଦିନ ବଡ଼ ହାଲିଆ ଲାଗୁଥିଲା । ସେ ଭାବୁଥିଲା, ଏଇ ସମୟଟାରେ ସେ ଘରକୁ କେହି ନଆସନ୍ତା କି, କେହି ତାକୁ ନ ଦେଖନ୍ତା କି ! କେହି ମଧ ତାକୁ ନ ଖୋଜନ୍ତା କି ! ତା ସହିତ କେହି କଥା ହେବାକୁ ନଆସନ୍ତା କି, କେହି ତାକୁ ମନେ ମଧ ନପକାନ୍ତେ କି ! କେହି ତାକୁ ଲୋଡ଼ୁ ନଥାଆନ୍ତେ । ଏଇ ମୁହୂର୍ତ୍ତରେ ସେ, କାହିଁକି କେଜାଣି, କାହାକୁ ଦେଖା କରିବାକୁ ମୋଟେ ଚାହୁଁ ନଥିଲା ।

ଆରେ କିଏ ବା ତାକୁ ଖୋଜିବ ? କାହିଁକି ଖୋଜିବ ? ତା'ଠି କଅଣ ଅଛି ଯେ' ! ତାକୁ ଏ ସହରରେ, ଏ ସାହିରେ କେତେଜଣ ଜାଣନ୍ତି ? ଏଇ ଘରେ ମଧ ତା'ଠି କାହାର କି କାମ ଥାଇପାରେ ଯେ ତାକୁ ଖୋଜି ପକେଇବ ! ସେ ବା କାହାର କୋଉ କାମରେ ଲାଗୁଚି ? ଲାଗିପାରେ- ସେମିତିକା ସମ୍ଭାବନା ମଧ ନାହିଁ ବା ନଥିଲା । ତେଣୁ ସେ ସବୁବେଳେ ଅଲୋଡ଼ା ।

ତଥାପି କିଏ ହୁଏତ୍ ହଠାତ୍ ଘର ଭିତରକୁ ଆସିଯାଇପାରେ । ଜଣେ ଯେତେବେଳେ ଆଉ କୋଉଠି ନାହିଁ ହୁଏତ ଏଇ କୋଠରିରେ ଥାଇପାରେ । ଏମିତି ଗୋଟାଏ ଅନାବଶ୍ୟକ ଭାବନା ନେଇ କେହି ହୁଏତ ଏ ଆଡ଼କୁ ଆସିଯାଇ ପାରେ । ଏ ନିର୍ଜନତା ରାଜୁତି କରୁଥିବା କୋଠରିରେ ଜୀବନକୁ ଦେଖି ସେ ହୁଏତ ଆଶ୍ଚର୍ଯ୍ୟ ହୋଇଯାଇପାରେ । ବିସ୍ମୟ-ବିସ୍ତାରିତ ଆଖିରେ ସେ ତାକୁ ଦେଖି ଅନେକଗୁଡ଼ିଏ ଅସମାହିତ ସମସ୍ୟାର ଅଡୁଆ ପ୍ରଶ୍ନ ତା ଉପରକୁ ଫୋପାଡ଼ି ଦେଇପାରେ- ପ୍ରଶ୍ନ ଜାଲରେ ତାକୁ ବାନ୍ଧି ଦେଇପାରେ ।

ସେମିତି କେବଳ ଜଣେ କରିପାରେ । ଏ ଘରେ, ଏ ପରିବାରରେ, ଏ ସାହି ବସ୍ତିରେ ଏପରିକି ଏ ସମସ୍ତ ସହରରେ, କେବଳ ଜଣେ ତାକୁ ଖୋଜିପାରେ, ଲୋଡ଼ିପାରେ, ପ୍ରଶ୍ନ ପଚାରିପାରେ ଏବଂ ତା'ର ସମସ୍ତ ଅନୁଶାସନିକ ଶବ୍ଦର ସମ୍ଭାର ଭିତରେ ତାକୁ ସମ୍ମୋହିତ କରି ଦେଇପାରେ । ସେଇ କେବଳ ଜଣେ, ଯିଏ ତା' ପାଇଁ କ୍ରୋଧ କରିପାରେ, ରାଗ ଅଭିମାନ କରିପାରେ, ଆଖିରୁ ଲୁହ ଝରେଇପାରେ ଏବଂ ତା ପରମୁହୂର୍ତ୍ତରେ ତା'ର ସମସ୍ତ ଆକଟବାରଣ

ଭିତରେ ଆବଦ୍ଧ କରି ରଖିଦେଇ ନିମିଷକେ ଅଦୃଶ୍ୟ ମଧ ହୋଇଯାଇପାରେ । ତା'ପରେ ହୁଏତ୍ ତିନି ଚାରିଦିନ କିମ୍ବା ତିନି ଚାରି ମାସ ଯାଏ ଉଭାନ ମଧ ହୋଇଯାଇପାରେ ।

ସେ କିନ୍ତୁ ଆଜି ନାହିଁ । ସହର ବାହାରକୁ ଯାଇଛି । ଖୁବ୍ ଶୀଘ୍ର ଫେରିବ ବୋଲି କହିଯାଇଚି । ନ ଆସି ବି ପାରେ । କାହିଁକି ଆସିବ ? ଗୋଟାଏ ଅନିର୍ଦ୍ଦିଷ୍ଟ କାଳ ଯାଏ ସେ ମୋ ପଛରେ ଚାଲିଥିବ, ଦୂରତ୍ୱ ମାପୁଥିବ, ଦୂରତ୍ୱର ବ୍ୟବଧାନକୁ ସଜାଡ଼ି ଧରୁଥିବ ଏବଂ ପଚାରୁଥିବ, ଆଉ କେତେକାଳ ଏମିତି ଚାଲୁଥିବି ହେ ଧ୍ରୁବତାରା ?''

ହଁ, ଏମିତି ତ ସେ କହେ ।'' ତମେ ମୋତେ ଦେଖୁନଥିବ । ଥରେ ବୋଲି, ପଛରେ କିଏ ଅଛି କି ନା ଦେଖୁ ନଥିବ ଅଥଚ ମୁଁ ଏକାନ୍ତ ବଶମ୍ବଦ ପରି, ଏକମୁହାଁ ହୋଇ, ପାଇବାର ସବୁ ଆଶାକୁ ପଣତରେ ଗଣ୍ଠି ବାନ୍ଧି ଚାଲିଥିବି, ଧୂମାଳ ଆକାଶର ତାରା ଖୋଜି ଖୋଜି, ଦିଗରୁ ଦିଗନ୍ତକୁ, ଆକାଶରୁ ପାତାଳକୁ, ଜନ୍ମରୁ ଜନ୍ମାନ୍ତରକୁ ? କେତେକାଳ ଏମିତି ଆଖି ବନ୍ଦ କରି ବାଟ ଖୋଜୁଥିବି ?

ଏସବୁ ପ୍ରଶ୍ନର ଉତ୍ତର ଏ ଯାଏଁ ସେ ପାଇନାହିଁ । ପାଇବାର ଆଶାଟା ବୋଧେ ଏବେ ତା'ର ମଉଳି ଆସୁଥିବ । ଆଖିଠାରୁ ବସ୍ତୁ ଯେତିକି ଦୂରେଇ ଯାଉଥିବ, ତା'ର ଆକାର ଆସ୍ତେ ଆସ୍ତେ ସେତିକି ଛୋଟ ହୋଇ ଶେଷରେ ବିନ୍ଦୁରେ ପରିଣତ ହେଉଥିବ । ତା ପରର ଅବସ୍ଥା ଶୂନ୍ୟତା । ସେତେବେଳେ ଆଉ କିଛି ମିଳେନା । ସେତେବେଳେ ଦେଖିବାର ମଧ କିଛି ଥାଏନା । ଯାହା ଥାଏ ତାକୁ ଦେଖି ହୁଏନା ।

ସେଇ କିଛି ନପାଇ ଅନେକ ଖୋଜୁଥିବା ବସ୍ତୁ ଆଖିରେ ଜୀବନ ଏବେ ବି ଅପ୍ରାପ୍ତ ପୁଲକଟିଏ ହୋଇ ରହିଯାଇଚି । ତା'ର ମନେପଡୁଚି କେହିଜଣେ ହୁଏତ କହିଥିଲେ, 'ଖୋଜିବାରେ ଯେତିକି ଆନନ୍ଦ ପାଇବାରେ ସେତକ ନଥାଏ ।'

ହେଇ ତ ସେଦିନ... ସେଦିନ ସେମାନେ ଦୁହେଁ ବସିଥିଲେ ସେ କୋଠରି ଭିତରେ-ପାଖାପାଖି ଦୁଇଟା ଚେୟାରରେ । ଘରେ ଆଉ କେହି ନଥିଲେ । ସଞ୍ଜ ହୋଇ ଅନ୍ଧାରଟା ଆସ୍ତେ ଆସ୍ତେ ବହଳ ହୋଇ ଆସିଲା । ତଥାପି ସେମାନଙ୍କର ମନେ ନାହିଁ ଯେ ଅନ୍ଧାରଟା କେତେବେଳୁ ସେଠି ତା'ର ସିଂହାସନ ପକେଇ ସାରିଲାଣି । ସେଇ ଅନ୍ଧାର ଭିତରେ ଜୀବନ ଓ ସେ । ସେମାନେ କେହି କାହାକୁ ଦେଖୁ ନଥିଲେ । କେହି କାହାଠୁ ମଧ କିଛି ଶୁଣୁ ନଥିଲେ । କେମିତି ଗୋଟାଏ ନିରବ ନିଥର ସମୟରେ ସେ ଦୁହେଁ ଦୁହିଁଙ୍କର ଉପସ୍ଥିତି ହିଁ କେବଳ ଅନୁଭବ କରୁଥିଲେ ।

ଅନେକ ସମୟ ଏମିତି ବିତିଗଲା ପରେ କେହି ଜଣେ କହୁଥିବାର ଶୁଣିଲା ଜୀବନ, ସୁଇଚ୍‌ଟା ଦେଇ ଦେବି ?''

''ଦିଆ ହେଇନି ?''

ତା'ର ତିନି ଚାରି ଦିନ ପର ପର୍ଯ୍ୟନ୍ତ ସେ ଆଉ ଆସି ନଥିଲା । ସେ କାହିଁକି ଆସି ନଥିଲା ଓ କାହିଁକି ଆସି ଥାଆନ୍ତା ? ଜୀବନ ଏ ଦୁଇଟି ପ୍ରଶ୍ନର ଉତ୍ତର ଆଜି ବି ଖୋଜି ପାଏନା ।

କବାଟରେ କାହା ହାତର ଶବ୍ଦ, "ଜୀବନ ଅଛି ? ଜୀବନ ?"

ଜୀବନ ଚମକି ପଡ଼ିଲା । ସେ ଭୂତ ଦେଖିଲା କି ? ଜୀବନ ଅଛି ? ସତରେ କଅଣ ତା'ଠି ଜୀବନ ଅଛି ? କାହିଁ ? କୋଉଠି ସେ ଜୀବନ ? ଆଲୋକରେ ନା ଅନ୍ଧାରରେ ? ଦିବାଲୋକରେ ନା ଚନ୍ଦ୍ରାଲୋକରେ ? ସ୍ୱର୍ଗରେ ନା ମର୍ତ୍ତ୍ୟରେ ?

ଜୀବନ ଏ ଯାଏଁ ଜାଣିନାହିଁ, ଜୀବନର ସଂଜ୍ଞା, ତା'ର ଆକୃତି ଓ ପ୍ରକୃତି- ତା'ର ରୂପ, ରସ ଓ ଗନ୍ଧ । ସେ ସେସବୁ ବିଷୟରେ କିଛି ଜାଣି ନଥିଲାବେଳେ କି ଉତ୍ତର ଦେବ ? ଏ ପ୍ରଶ୍ନର ଉତ୍ତରକୁ ଖାଲି ଗୋଟାଏ ଛୋଟ ହଁ କି ନାଁରେ ସୀମାବଦ୍ଧ କରି ରଖାଯାଇପାରେନା ।

ଜୀବନ ଦେଖିଲା, ଯେଉଁ କବାଟକୁ ସେ ଅନେକ ଆଗରୁ ଆଉଜାଇ ଦେଇଥିଲା, ଆଲୋକର ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ, ସେଇଟା ଆସ୍ତେ ଆସ୍ତେ ଏବେ ମେଲି ହୋଇଯାଇଛି । କୋଠରି ଭିତରେ ପୁଣି ଆଲୋକ ବିଛାଡ଼ି ହୋଇପଡ଼ିଲା । ଯେମିତିକି ଆଲୋକ ନିଜେ ବନ୍ଦ ଥିବା କବାଟକୁ ନିଜର ସମସ୍ତ ଶକ୍ତି ଖଟେଇ ଧୀରେ ଖୋଲିଚି ଏବଂ କବାଟ ଯେତିକି ଖୋଲୁଚି ସେତିକି ମେଞ୍ଚା ମେଞ୍ଚା ଆଲୁଅ ଘର ଭିତରକୁ ପଶିଆସୁଛି ।

"କଅଣ ହେଲା ? ଘରଟାକୁ ଅନ୍ଧାର କରି ରଖିବୁ ଯେ !

ଜୀବନ ସାମନାରେ ତା'ର ବାପା । ଦୁହେଁ ଦୁଇ ଜାଗାରେ ଅଟକି ଯାଇଛନ୍ତି । ମଝିରେ ଦୁଆରବନ୍ଧ, ଦୁହିଁଙ୍କୁ ଅଲଗା କରିଦେଇଚି, ଦୁହିଁଙ୍କୁ ଦୁଇ ଅଜଣା ଇଲାକାରେ ଅଟକେଇ ଦେଇଚି କେହି ସେମାନଙ୍କ ସୀମା ଡେଇଁ ଆଗକୁ ଯିବାକୁ ସାହସ କରୁନାହାନ୍ତି ।

ତେବେ କଅଣ ଦୁହେଁ ଦୁହିଁଙ୍କୁ ଭୟ କରୁଚନ୍ତି ? ସେମାନେ ପରସ୍ପରକୁ ଅନାବଶ୍ୟକ ଭାବରେ ଭେଟୁଚନ୍ତି ବୋଲି ମନେକରୁଚନ୍ତି ? ଭାବୁଚନ୍ତି କି ଆମେ ଜାଣି ନଥିଲୁଁ ଆମେ ଦୁହେଁ ଭେଟାଭେଟି ହେଇ ଯିବା ବୋଲି ଏମିତି ଆକସ୍ମିକ ଭାବରେ, ଅଲୋଡ଼ା ଅବସ୍ଥାରେ ? ଦୁହେଁ ଦୁହିଁଙ୍କୁ ଏମିତି ଭାବରେ ଭେଟିଲେ କିଏ ପ୍ରଥମେ କଥା କହିବ ଓ କଅଣ କହିବ, ସେ କଥା ଠିକ୍ କରି ପାରୁ ନଥିଲେ ।

ଜୀବନ ବୁଝିଲା ବାପା କାହିଁକି ଆସିଚନ୍ତି । ସେ ଜାଣିଲା ବାପା କଅଣ ଚାହାନ୍ତି । ବାପା କଅଣ ପାଇଁ ଏ ଅବେଳଟାରେ ଏ କବାଟରେ ହାତ ମାରିଲେ । ତାଙ୍କ ମନରେ କି କି ପ୍ରଶ୍ନ ଏବେ ଉଙ୍କିମାରୁଚି ବା ମାରୁ ଥାଇପାରେ, ସେ କଥା ଯେ ଜୀବନକୁ ଛୁଇଁନାହିଁ, ସେ କଥା ନୁହେଁ ।

କଅଣ ହେଲା ? ତୁ ଯାଇଥିଲୁ ଯେ ?" ବାପା ଉପରକୁ ଚାହିଁ ପଚାରିଲେ, ଏଥିରୁ ଜଣାପଡୁଥିଲା ଯେ, ସେ ପ୍ରଶ୍ନ ଉପରେ ମୋଟେ ଗୁରୁତ୍ୱ ଦେଉନାହାନ୍ତି । ଏମିତି ଗୋଟାଏ ପଚାରିଦେଲେ ।

ଜୀବନ ତଳକୁ ମୁହଁ ପୋତିଲା, ମେଲା କବାଟ ଦେଇ ସେତେବେଳେ ଅନେକ ଆଲୋକ ଜୀବନ ଉପରେ ପଡ଼ି ତାକୁ ଉଜ୍ଜ୍ୱଳ କରି ପକାଉଥିଲେ । ସେ ସେଥିରୁ ରକ୍ଷା ପାଇବା ପାଇଁ ପ୍ରାଣମୂର୍ଚ୍ଛା ଉଦ୍ୟମ କଲା, କିନ୍ତୁ ଏବେ ଏବେ ସେ ଅନୁଭବ କରୁଛି, ଯେମିତି ଆଲୋକର ଅତ୍ୟାଚାର ଅପେକ୍ଷା ବାପାଙ୍କ ପ୍ରଶ୍ନର ଅତ୍ୟାଚାର ତାକୁ ବେଶି ଯନ୍ତ୍ରଣାଦାୟକ ମନେହେଉଛି । ସେ ଅତିଷ୍ଠ ହେଇଉଠୁଛି । ଆଃ, ସବୁ ଯନ୍ତ୍ରଣା ଯେମିତି ତା' ଉପରେ ଅଜାଡ଼ି ହେଇପଡୁଛି ।

ଏଇସବୁ ମୁହୂର୍ତ୍ତମାନଙ୍କରେ ଜୀବନ ଛଳନାର ଛତାଟିଏ ନେଇ ମୁଣ୍ଡ ଉପରେ ଟେକି ଧରେ ଏବଂ ଅନେକଗୁଡ଼ିଏ ନିଶ୍ଚିତ ଆକ୍ରମଣରୁ ନିଜକୁ ବଞ୍ଚେଇବାକୁ ଚେଷ୍ଟା କରେ । ତା'ପରେ କଇଁଛ ବେକଟିକୁ ନିଜ ଖୋଳପା ଭିତରେ ଭର୍ତ୍ତି କରି ଚୁପ୍‌ଚାପ ଭିତରେ ପଡ଼ିରହେ ପିଠି ଉପର ଦେଇ ଝଡ଼ଟା ଚାଲିଯିବାଯାଏ ।

ଜୀବନ ଏଥର ସେସବୁ କିଛି କରିପାରିଲାନି । ତା ନିଜ ଭିତରେ ଅନ୍ତତଃ ଗୋଟିଏ ସହଜ ଉତ୍ତର ଖୋଜି ଅଣ୍ଡାଳି ପକାଇଲା । ସବୁଠି ମନ୍ଥି ଚକଟି ପକାଇଲା । କିନ୍ତୁ ସବୁଠି ସେ ହତାଶ ହେଲା । ତା ପାଟି ବନ୍ଦ ହେଇଗଲା । କଅଣ କହି, ଏଥର ମଧ, ତା ଉପରେ ଅନେକ ଆଶା ପୋଷଣ କରୁଥିବା ବାପାଙ୍କୁ ସେ ଭୁଲେଇ ଦେଇପାରିବ, ଚିନ୍ତା କରିପାରୁନଥିଲା ।

ହୁଁ, ବୁଝିଲି, ହଉ ଠିକ୍ ଅଛି, ବଡ଼ ଗମ୍ଭୀର ଓ ହତାଶିଆ ସ୍ୱରରେ ବାପା କହିଲେ ।

ସେ ଫେରିଗଲେ । ବାପା ଆସିଥିଲେ ଯାହା ପାଇବା ପାଇଁ, ତା ସେ ପାଇଲେନି । ଚଉଷଠି ବର୍ଷର ଅବସରପ୍ରାପ୍ତ ବାପାଙ୍କ ଅନ୍ତର୍ନାଦ କେବଳ ଜୀବନ ଛଡ଼ା ଆଉ କେହି ସେ ଘରେ ବୁଝିବାକୁ ନାହିଁ ।

ଜୀବନ ନିଜ ଜୀବନର ଅଲିଖିତ ଇତିହାସର କେତୋଟି ପୃଷ୍ଠା ଓଲଟାଇ ପକାଇଲା । କି ସୁନ୍ଦର ସେ ପୃଷ୍ଠାଗୁଡ଼ାକ ! ଏବେବି ଚିକ୍‌ଚିକ୍ କରୁଚି । ଅକ୍ଷରଗୁଡ଼ାକ ଯେତିକି ସ୍ପଷ୍ଟ, ସେତିକି ସେ ଭାଷା ପ୍ରାଞ୍ଜଳ ।

କିଛି କେବେ ବି ଅବୁଝା ହେଇନାହିଁ । ଅବୁଝା ହେବାର ଆବଶ୍ୟକତା ଅନୁଭବ କରାଯାଇନାହିଁ । ଗୋଟାଏ ପାହାଡ଼ରୁ ଆସି ସମତଳ ଅଞ୍ଚଳରେ ତେଇଁ ତେଇଁ ଡେଙ୍ଗି ଡେଙ୍ଗି ଯାଉଥିବା ନଈଟିଏ ପରି ସେ ସମୟ ଗୁଡ଼ାକ ଗାଁ, ବଣ, ବିଲ, ନଈପଠା, ପୁଣି ଶୀତ ବସନ୍ତ ସବୁକୁ ପଛକୁ ପକେଇ ଅନାୟାସରେ ଅତିକ୍ରମ କରି ଆସିଚି- ନା ଗୋଡ଼ରେ କାଦୁଅ ଲାଗିଚି ନା କଣ୍ଟା ବାଜିଚି ।

ସେ ଆଉ କେଇଟା ପୃଷ୍ଠା ଅନ୍ୟମନସ୍କ ହେଇ ଓଲଟାଇ ଦେଲା । ଅଚାନକ ଅଟକିଗଲା । ଯେଉଁଠି ସେ ଦେଖିଲା ବେଜାଏ ଆମ୍ବତୋଳ । ମହ ମହ ବାସନାରେ ମହଲ ଫାଟିପଡୁଚି । ଜୀବନ ତା ଜୀବନର ପ୍ରଥମ ଆମ୍ବତୋଳ ଦେଖି ମୁଗ୍ଧ ହୋଇଗଲା । ଭାବିଲା,

ଏଇ ପାଖରେ ଏତେ କଥା ଥିଲା, ଅଥଚ ସେ କେମିତି ଜାଣି ନଥିଲା ! କେମିତି ଜାଣି ନଥିଲା ଯେ ପାଗଳ ପରି ଘୁରିବୁଲୁଥିବା ମୃଗୁଣୀର ନାଭିକେନ୍ଦ୍ର ହିଁ କସ୍ତୁରୀର ଉତ୍ପତ୍ତିସ୍ଥଳ । ଆରେ ସେଇଟା ପୁଣି କଅଣ ? ପେନ୍ଥା ପେନ୍ଥା ବଉଳ ଭିତରେ ଏ ଫୁଲ ମଲମଲ ମୁହଁ କୋଉଠୁଁ ଆସିଲା ? କାହାର ଏ ମୁହଁ ? ଭୁଲରେ କୋଉ ସ୍ୱର୍ଗ ରାଜ୍ୟରୁ ବାଟ ଭୁଲି ପଳେଇ ଆସିଥିବା ପରୀର ? ଫୁଲବଣ ଭିତରେ ଫୁଲ ଚାଙ୍ଗୁଡ଼ିଟାଏ ନା କ'ଣ

ଜୀବନ ବହିଟିକୁ ବନ୍ଦ କରିଦେଲା ଏବଂ ପଚାରିଲା- ଏ ଅବେଳଟାରେ ତୁ କୋଉଠୁ ଆସିଲୁ ? କାହିଁକି ଆସିଲୁ ଯେ ? କଅଣ ଶୁଣିବାକୁ ? ଯୋଉ ପ୍ରଶ୍ନର ଉତ୍ତର ବାପା ନ ପାଇ ଦୀର୍ଘଶ୍ୱାସ ପକେଇଏଇ ଏବେ ଏବେ ଫେରିଗଲେ, ସେଇ ପ୍ରଶ୍ନର ଉତ୍ତର ଦେବା ପାଇଁ ମୋ ପାଖରେ ଗୋଟିଏ ବି ଶବ୍ଦ ନାହିଁ । ମୋ ନିପାରିଲାପଣ ଦେଖି ସବୁ ଶବ୍ଦ ମୋତେ ପ୍ରତ୍ୟାଖ୍ୟାନ କରିଛନ୍ତି ।

ଶବ୍ଦମାନେ ସେଇଠି ଭିଡ଼ ଜମାନ୍ତି ଯୋଉଠି ଶବ୍ଦରେ ଅର୍ଥ ଯୋଡ଼ି ହୁଏ । ଶବ୍ଦମାନେ ସେଇଠି ପସରା ମେଲିଦିଅନ୍ତି, ଯେଉଁଠି ସେମାନଙ୍କୁ ଧରି ରଖିବା ପାଇଁ ଅନେକ ଆଞ୍ଜୁଳା ଏକାଥରେ ଆଗେଇ ଆସନ୍ତି । ଶବ୍ଦ ସେଠି ଧନ୍ୟ ହୋଇଯାଏ । ତା'ର ଚାଲବୁଲ ହୁଏ ଆଡ଼ମ୍ବରପୂର୍ଣ୍ଣ, ଅର୍ଥପୂର୍ଣ୍ଣ, ଭାବଗମ୍ଭୀର ଏବଂ ତାକୁ ଦେଖି ମଣିଷ ବିସ୍ମୟ ବିଭୋର ହୋଇଯାଏ ।

କିନ୍ତୁ ଜୀବନ ପାଖରେ ସବୁ ଶବ୍ଦ ସବୁବେଳେ ଅର୍ଥହୀନ, ଗନ୍ଧହୀନ । ତେଣୁ ତୁ ଆଜି ମୋ'ଠୁ ଆଉ କଅଣ ଶୁଣିବୁ ଶ୍ରାବଣୀ । ଏଥର ମଧ ମୁଁ ସଫଳତା ଲାଭ କରିପାରି ନାହିଁ । ମୋର ସମସ୍ତ ଶିକ୍ଷା ଦୀକ୍ଷା, ଗବେଷଣା, ସ୍ୱର୍ଣ୍ଣପଦକ, ବିଶ୍ୱବିଦ୍ୟାଳୟର ରେକର୍ଡ଼ ଏଥର ମଧ ବ୍ୟୁରୋକ୍ରେସିର ବିସ୍ତୀର୍ଣ୍ଣ ଜାଲର ପାଖାପାଖି ଅଞ୍ଚଳକୁ ସୁଦ୍ଧା ଯାଇ ପାରିଲାନି । ଗୋଟାଏ ତୃତୀୟ ଶ୍ରେଣୀର କିରାଣି ଚାକିରି ପାଇଁ ମଧ ମୁଁ ଯୋଗ୍ୟ ବିବେଚିତ ହୋଇପାରିଲି ନାହିଁ ।

ବାପା ହୁଏତ ଭାବୁଥିବେ, ଚାକିରିଟିଏ ପାଇବାକୁ ଯେତିକି ଚେଷ୍ଟାର ଆବଶ୍ୟକ, ମୁଁ ତାହା କରିପାରୁ ନାହିଁ । ମୁଁ ସେଠି ମଧ ସେ 'ଚେଷ୍ଟା' ଶବ୍ଦର ଅର୍ଥ ବୁଝି ନାହିଁ । ମୋର ସମସ୍ତ ପାଠର ପ୍ରତ୍ୟେକ ଗଳିକନ୍ଦି ମୁଁ ଖୋଜିଚି । ଅନେକ ଖୋଜିଚି । କିନ୍ତୁ ସେ ଅଲୌକିକ ଶବ୍ଦର ଐନ୍ଦ୍ରଜାଲିକ ଅର୍ଥ ମୁଁ ଏ ଯାଏ ଖୋଜି ପାଇନି । କେହି ଜଣେହେଲେ ମୋତେ ସେ ଶବ୍ଦର ଅର୍ଥ କ'ଣ ତା'ର ସନ୍ଧାନ ଦେଇପାରି ନାହାନ୍ତି । ମୋର ମନେହେଉଚି, ବାପା ଯେଉଁ ଚେଷ୍ଟା କଥା କହୁଚନ୍ତି, ତାହା ମୋ ଅଭିଧାନ ବାହାରେ । ସେ ଏକ ଭିନ୍ନ ପୃଥିବୀର କଥା । ମୋ ପାଖରେ ଯଦି ସେମିତି କିଛି ଶକ୍ତି ଥାଆନ୍ତା, ସେମିତି କିଛି ମନ୍ତ୍ର ଜଣାଥାଆନ୍ତା,ତେବେ, କେଜାଣି, ମୁଁ ହୁଏତ ସେ ପ୍ରକାର ନୂଆ ପୃଥିବୀରେ ପହଞ୍ଚି ପାରନ୍ତି ।

ଧରିଥିବା ବହିଟିକୁ ସେ ଘରର ଗୋଟାଏ କୋଣକୁ ଫୋପାଡ଼ି ଦେଲା ପରି ଜୀବନ ପଛ କଥାଗୁଡ଼ିକ ଭୁଲିଯିବାକୁ ଠିକ୍ କଲା ଏବଂ ତା'ପରେ କବାଟଟାକୁ ଅତି ସନ୍ତର୍ପଣରେ ବନ୍ଦ କରିଦେଇ ଆସି ବିଛଣାରେ ନିଜ ଦେହକୁ ଲମ୍ବାଇ ଦେଲା ।

ଆଃ, ଅନ୍ଧାରଟା କେତେ ଚମତ୍କାର ସତେ ! କେଡ଼େ ସୁନ୍ଦର କେତେ ଶୀତଳ, ଆଉ କେତେ ମନୋରମ ତା'ର ଦୃଶ୍ୟପଟ । ତାର ମନେହେଲା, ପିଲାକାଳେ ଜୀବନ ଯେମିତି ଖେଳିବୁଲି ଆସି ହାଲିଆ ହେଇପଡ଼ିଲେ, ତା' ମାଆ ତାକୁ କୋଳକୁ ଟାଣିନେଇ ଆଉଁଶି ଦେଉଥିଲେ, ମୁହଁରୁ ଝାଳ ପୋଛି ଦେଉଥିଲେ, ଆଜି ଅନ୍ଧାର ସେମିତି ତାକୁ କୋଳେଇ ନେଇ ଗେଲ କରୁଚି । ଗେଲ କରି ବୋକ ଦେଉଚି । ତା' ମୁଣ୍ଡର ବାଳକୁ ସାଉଁଳି ଦେଉଚି । ଅନ୍ଧାର ତାକୁ ଯେମିତି କହୁଚି, ଆ ହାଲିଆ ହେଇ ଯାଉଛୁ କି ? ଜୀବନ ଯୁଦ୍ଧରେ ଥକି ପଡ଼ିବୁ କି, ତୋ ହାତ ଗୋଡ଼ ଅବଶ ହେଇଯାଉଛି ପରି ଲାଗୁଚି । ଗୋଟିଏ ମନ, ଗୋଟିଏ ବିବେକ, ଗୋଟିଏ ଶରୀର ନେଇ ତୁ ଏତେ ବଡ଼ ପୃଥିବୀରେ ଏତେ ଲୋକଙ୍କ ସହିତ କେମିତି ଲଢ଼େଇ କରିପାରିବୁ ଯେ ? ଏତେ ଶକ୍ତି ତୋର କୋଉଠୁଁ ଆସିବ ? ତୁ ଆ, ମୋ କୋଳକୁ ଆ, ମୁଁ ତୋତେ ଆଶ୍ରୟ ଦେବି । ତୁ ଶାନ୍ତି ପାଇବୁ । ମନେରଖ, ଯାହା ଆଲୋକ ଦେଇ ପାରେନା, ତାକୁ ଅନ୍ଧାର ଦେଇପାରେ । ଅତି ସହଜରେ ଦେଇପାରେ । ଆ ମୋ କୋଳକୁ... ।

ଜୀବନର ଆଖି ମୁଦି ହୋଇ ଆସିଲା । ସେ ଶୋଇବାକୁ ଚେଷ୍ଟା କଲା । ଏବେ ଆଉ କେହି ଆସି ତାକୁ ଡିଷ୍ଟର୍ବ କରିବ ନାହିଁ । ଆଉ କିଏ ଅଛି ? କିଏ ବା କାହିଁକି ତାକୁ ଡିଷ୍ଟର୍ବ କରିବ ?

ଘର ଭିତରେ କିଟିକିଟି ଅନ୍ଧାର । ବୋଧେ ଯା' ଭିତରେ ସଞ୍ଜ ହୋଇ ଆସିଲାଣି । ହୁଏତ୍ ରାତି ମଧ ହେଇଯିବଣି । କାରଣ ଏଇ କିଛି ସମୟ ପୂର୍ବରୁ ସେ ଯେଉଁ ଚଢ଼େଇମାନଙ୍କର କୋଳାହଳ ଶୁଣୁଥିଲା, ସେମାନଙ୍କର ଘରବାହୁଡ଼ା କଳରବ ଏବେ ବନ୍ଦ ହେଇଗଲାଣି । ସେମାନେ ତାଙ୍କ ଘରକୁ ଫେରିଆସିବେଣି । ସେମାନଙ୍କ ପରିବାର ସହିତ ସେମାନେ ଭେଟାଭେଟି ହେବେଣି । ପିଲାଛୁଆର ପରିବାରଟି କେତେ ସମୟ ପାଇଁ ଆନନ୍ଦମୁଖର ହେଇ ଉଠିଥିବ । ସମସ୍ତେ ହୁଏତ ସେଇ ମଧୁର ମୁହୂର୍ତ୍ତକୁ ଉପଭୋଗ କରିବାକୁ ଏକ ନୂତନ ଭାବାବେଗରେ ଉଲ୍ଲସିତ ହେଇ ଉଠିଥିବେ ।

ଆଉ ଜୀବନ ? କୋଉଠି ସେ ? କୋଉଠି ତା'ର ପରିବାର ? ତା'ର ବି ତ ଗୋଟାଏ ସ୍ୱପ୍ନ ଥିଲା । ସେଥିରେ ସେ ଗୋଟାଏ ବସା ବାନ୍ଧିବାକୁ ସୁନ୍ଦର ସୁନ୍ଦର ନକ୍ସାମାନ ଆଙ୍କୁଥିଲା । କିନ୍ତୁ କାହିଁ ? କୁଆଡ଼େ ଗଲା ସେସବୁ ?

ପରମୁହୂର୍ତ୍ତରେ ପୁଣି ଭାବିଲା, ଆଜି ଆଉ ସେସବୁ ଭାବିବାର ଅବକାଶ ନାହିଁ । ତା'ର ସେସବୁ ଆଉ କିଛି ଦରକାର ନାହିଁ । ବରଂ କେହି ତା' ପାଖକୁ ନଆସନ୍ତୁ । କାହାକୁ ସେ ଭେଟିବାକୁ ଚାହେଁନା । କାହାକୁ ସେ କୌଣସି ଉତ୍ତର ମଧ ଦେବାକୁ ଚାହେଁ ନା । ସେ ଆଜି ସମସ୍ତଙ୍କର ଶତ୍ରୁ । କେହି ତାକୁ ଭଲ ପାଆନ୍ତିନି । ବେକାର ଯୁବକଟି ପ୍ରଥମେ ତା'ର ବାପର ଶତ୍ରୁ । ଦ୍ୱିତୀୟରେ... । କାହା କଥା ସେ ଭାବୁଚି ? ଶ୍ରାବଣୀ; ଯିଏ ତାକୁ ଯୁଗ ଯୁଗ ଧରି

ଅପେକ୍ଷା କରିବ ବୋଲି କହିଥିଲା । କିନ୍ତୁ କାହିଁକି ? କାହିଁକି ସେ ଏମିତି ନିଜକୁ ତିଳତିଳ କରି ହତ୍ୟା କରୁଚି ? ସମଗ୍ର ପୃଥିବୀ ତା'ପାଇଁ ଅପେକ୍ଷା କରିଥିବ । ତେବେ ଏ ଅସାଧ ସାଧନ ପାଇଁ ଚେଷ୍ଟା କାହିଁକି ? ସେ ବି ମୋତେ ଅଭିଶାପ ଦେଉଥିବ ।

କାହାର କରାଘାତରେ କବାଟ ଦେହରେ ପୁଣିଥରେ କମ୍ପନ ସୃଷ୍ଟି ହେଲା ।

କିଏ ? କିଏ ହେଇପାରେ ? ଶ୍ରାବଣୀ ?

ସେ ଧଡ଼ପଡ଼ ହେଇ ଉଠିପଡ଼ିଲା ଏବଂ ଦଉଡ଼ି ଯାଇ କବାଟଟାକୁ ପଛପଟୁ ଠେଲି ଧରିଲା । ତା'ର ମନେହେଲା, ସେ ପଟୁ କେହି ଜଣେ କବାଟକୁ ଖୁବ୍ ଜୋର୍‌ରେ ଠେଲୁଚି । ଜୀବନ ହୁଏତ୍ ସମ୍ଭାଳି ପାରୁନାହିଁ । ସେ ନିଜର ସମସ୍ତ ଶକ୍ତି ଖଟେଇ ଆହୁରି ଜୋର୍‌ରେ କବାଟକୁ ଠେଲି ଧରିଲା ଏବଂ କିଛି ସମୟ ପରେ କାନ ପାରି ଶୁଣିଲା । ସେ ପଟୁ ଆଉ କୌଣସି ଶବ୍ଦ ଶୁଣା ଯାଉନଥିଲା । କୌଣସି ସୋର ଶବ୍ଦ ମଧ ନଥିଲା ।



ଝଂକାର, ଅଗଷ୍ଟ- ୯୯

# ପ୍ରତୀପ କୋଣ

ବେଳ ଅବେଳରେ ରାସ୍ତାଘାଟରେ, ନଈ କୂଳରେ କି ପୋଖରୀ ତୁଠରେ କିମ୍ବା ବେଳେବେଳେ ପାହାଡ଼ ତଳେ, ଆମ୍ବତୋଟା ବା ଶାଳବଣର ନିଛାଟିଆ ରାସ୍ତାରେ ସ୍ମୃତିର ଆଜିକାଲି ଭୂତ ସହିତ ଦେଖା ହେବାଟା ନୂଆ କଥା ନୁହେଁ । ଏମିତିକି ବେଳେବେଳେ କଲେଜର ନିଛାଟିଆ କରିଡର ଭିତରେ କି ଶୂନ୍‌ଶାନ୍ କ୍ଲାସ୍‌ରୁମ୍ ଭିତରେ ସେ ଅନେକ ଥର ଭୂତର ଏକଦମ୍ ସାମନା ସାମନି ହେଇଯାଇଚି ଏବଂ ପୁଣି ନିଜକୁ ସଂଯତ କରି ନେଇ ବାଟ ଭାଙ୍ଗି ଆଡେଇ ଯାଇଚି । ଏମିତି ଅନେକ ଅପ୍ରସ୍ତୁତ ଅଘଟଣ ମୁହୂର୍ତ୍ତ ସ୍ମୃତିକୁ ଆଜିକାଲି ଅନେକ ସମୟରେ ନିଜର ମନମୁଗ୍ଧ ନିଜସ୍ୱ ଭିତରେ ଜଡ଼ସଡ଼ କରେଇ ଦିଏ । କାହିଁକି କେଜାଣି ସେ ବୁଝି ପାରେନି । ସେ ମଧ ବୁଝିପାରେନି ଏଇ କେତେଦିନ ହେଲା ତାକୁ ଏ ସହ[illegible] ହଁ, ଏ ନଈ ଓ ନଈ ପଠା, ଏ ଶାଳବଣ, ଏ ମାଦକିଆ ଫୁଲଭର୍ତ୍ତି ମହୁଲ ଗଛ, ଆଉ ସଞ୍ଜ ହେଲେ ପାହାଡ଼ ମଝିରେ ଚୁପି ଚୁପି ଉଙ୍କି ମାରୁଥିବା ଜହ୍ନ ସବୁ ତାକୁ କେମିତି ନୂଆ ନୂଆ ଲାଗୁଚି ।

ସେ ଫିକ କିନା ହସି ଦେଲା ।

କଅଣ ହେଲା ହସିଲୁ ଯେ ? ତା ମାଆ ତାକୁ ପଚାରିଲେ ଶୁଖୁଥିବା ଗହମକୁ ଖୁଣ୍ଟି ଖାଉଥିବା କୁକୁଡ଼ା ଗୁଡ଼ାକୁ ତଡ଼ି ନେଉ ନେଉ ।

ହାର୍ଥ ! ତା ପରେ କହିଲେ ଏମିତି ଖୁଣ୍ଟଟା ପରି ବସିବୁ ନାଁ କୁ ବହି କେତେଟା ପକେଇ । ଆଉ ଏତେ ପାଖରେ କୁକୁଡ଼ା ଗୁଡ଼ାକ ଗହମ ସବୁ ଖାଇ ଯାଉଛନ୍ତି ସେଥିରେ ତୋ ନଜର ପଡୁନାହିଁ ? ସେ ବହିରେ କଅଣ ଏମିତି ଲେଖା ହେଇଚି ଯେ ତାକୁ ପଢ଼ି ମନେ ମନେ ହସି ଯାଉଚୁ ?

ସ୍ମୃତି ମାଆର କଥାରେ ଚମକି ପଡ଼ିଲା ଓ ଜିଭଟାକୁ କାମୁଡ଼ି ପକେଇଲା । ସତରେ ଏମିତି କେବେବି ହୁଏନା । ସେ ଆତ୍ମସ୍ଥ ହେଇ କହିଲା ନାଇଁ ମ ଏଇ ପଟିଆ ତଳେ ବିଛାଟା ପଶିଗଲା ଯେ....

ବିଛା ? ଆରେ ତାକୁ ମାରୁନୁ କାହିଁକି ? ତାକୁ ଆଗେ ମାର୍ । ନଚେତ ସେ ତୋ ପାଠ ପଢ଼ା ଛଡ଼େଇ ଦବ । ମାଆ ହେଁସଟାରେ ଗହମକୁ ଗୋଡ଼ରେ ଆଉ ଥରେ ଓଲଟ ପାଲଟ କରୁ କରୁ କହିଲେ ।

ସୁମତି ସେଇ କଥା ଭାବୁଥିଲା । ବିଛାଟା ଏଇ କେତେଦିନ ହେଲା ତାର ପ୍ରଥମ ଓ ପ୍ରଧାନ ଶତ୍ରୁ ହେଇ ଠିଆ ହେଇଚି । ତାକୁ ନ ମାଇଲେ ତାର ଆଉ ନିସ୍ତାର ନାହିଁ । ସେ ତାକୁ ମୋଟେ ପାଠ ପଢ଼ି ଦେବନି । ଘରେ ବାହାରେ ତାକୁ ରଖି ଥୋଇ ଦେବନି ମଧ । ତା ଛଡ଼ା ସେ ଯଦି ତାକୁ କାମୁଡ଼େ, ତା ବିଷ ତାର ସମସ୍ତ ଦେହରେ ଚରିଯିବ । ଆଉ ସେ ବିଷ ଜ୍ୱାଳାରେ ସେତ ଅସ୍ତବ୍ୟସ୍ତ ହୋଇଯିବ ।

ସୁମତି ବିଛାଟାକୁ ଦେଖି ଏତେ ଡରି ଯାଇଥିଲା ଯେ ସେ ସବୁଠି ତାର ଭୂତ ଦେଖିଲା । ବିଛାର ଭୂତମାନେ ଚାରିପଟେ ତାଣ୍ଡବ ନୃତ୍ୟ ଆରମ୍ଭ କରି ଦେଇଛନ୍ତି ।

ଏଥର ସୁମତି ବିଛାଟାକୁ ଖୋଜି ପକେଇଲା । ପଟିଆ ତଳ, ନିଜ ବହି ଥାକ ସନ୍ଧି, ଖାତା ତଳେ କି ନିଜ ଗୋଡ଼ ତଳେ । ସେ ସବୁଠି ବିଛାକୁ ଖୋଜିଲା । ପାଖରେ ଥିବା ସବୁଜ ଘାସ, ଗଛ ଲତା କିମ୍ବା ଏମିତି ସେମିତି ଅନାବନା ଭାବରେ ଉଠିଆସିଥିବା ପାହାଡ଼ିଆ ଫୁଲ ଗଛ ତଳେ କୋଉଠି କେମିତି ଲୁଚି ଯାଇଥାଇ ପାରେ ଭାବି ସେ ସବୁଆଡ଼େ ଖୋଜି ବୁଲିଲା । ନାଁ, ଏ ବିଛାଟାକୁ ସମୂଳେ ନଷ୍ଟ କରିବାକୁ ହେବ । ମନେ ମନେ ସେ ବିଛା ବିରୁଦ୍ଧରେ ଗୋଟାଏ ଯୁଦ୍ଧ ଘୋଷଣା କଲା ଏବଂ ତାର ନିଧନ ପାଇଁ ପାଠ ପଢା ଛାଡ଼ି ରାଣୀ ଝାନସୀ ପରି ଖଣ୍ଡାଟେ ଧରି ଘରୁ ନିଷ୍କ୍ରାନ୍ତ ହେଇଗଲା ।

କିନ୍ତୁ ତାହା ଥିଲା ଏକ ଅସଫଳ ଯାତ୍ରା । ସେ କୋଉଠି ବିଛାଟାକୁ ଦେଖିବାକୁ ପାଇଲାନି । ସେ ମଧ ଖୋଜି ପାଇଲାନି ବିଛାର ଗତିପଥ, ତାର ବାସସ୍ଥଳୀ ବା ଆଉ କିଛି । କିନ୍ତୁ ବିଛାର ଅବସ୍ଥିତିକୁ ମଧ ସେ ଅସ୍ୱୀକାର କରି ପାରିଲାନି । ପ୍ରତି ମୁହୂର୍ତ୍ତରେ ତାର ଅସ୍ତିତ୍ୱ ସୁମତିକୁ ଆତଙ୍କିତ କରି ରଖିଥାଏ । ତାର ସମଗ୍ର ଅନୁଭବ, ଚିନ୍ତା ଓ ଚେତନା ଯେମିତି ବିଛାର ଚାରିପଟେ ଗୋଟାଏ ଅଦୃଶ୍ୟ ଲକ୍ଷ୍ମଣରେଖା ଟାଣି ଦେଇଥାଏ ଏବଂ ତାକୁ ବନ୍ଦୀ କରିବାକୁ ସତତ ଚେଷ୍ଟା କଲେ ମଧ- ବିଛା କାହିଁ ? କୁଆଡ଼େ ଗଲା ? ଏଇଠିତ ଥିଲା । ଏଇନେ । ମାନେ ଏଇ ଟିକକଆଗରୁ ।

କିରେ ବିଛାକୁ ମାଇଲୁ ? ମାଆ ଆଉଥରେ ପଚାରିଲେ ପାଖ ଜୋରରୁ ଆଣିଥିବା ମାଠିଏ ପାଣିକୁ ଦାଣ୍ଡ ଅଗଣାରେ ଥିବା ଅଧାପୋତା ମାଠିଆରେ ଢାଳୁ ଢାଳୁ ।

ପାଉତ ନାହିଁ । ମାରିବି କେମିତି ? ମୋତେ ଡରି କୁଆଡ଼େ ପଳେଇଲା ବୋଧେ । ସୁମତି ଦୋହରାଇଲା କଥାଟା । ତା ନିଜର ଦୁର୍ବଳତାଟାକୁ ସେ ଘୋଡ଼େଇ ପକେଇବାକୁ ଚାହୁଁଥିଲା ।

ଯୋଉ ଝିଅ ସାମାନ୍ୟ ବିଛାଟାକୁ ମାରି ନପାରେ ସେ ପାଠପଢ଼ି କଅଣ ଯେ କରିବ ଭଗବାନଙ୍କୁ ଜଣା । କାଇଁଚ ଝାଡୁର ମୁଠାଟାରେ ଦଉଡ଼ିଟାକୁ ଶକ୍ତ କରି ବାନ୍ଧୁ ବାନ୍ଧୁ ତା ମାଆ କହିଲେ । ହଉ, ପାଠ ପଢ଼ା ଏବେ ଥାଉ, ବହି ସବୁ ରଖିଦେ । ଯାଆ ଛେଳିଗୁଡ଼ାକ ନେଇ ଶାଳ ଗଛ ମୂଳରେ ବାନ୍ଧି ଦେଇ ଆ । ଆଜି ଆଉ ଛାଡ଼ିବୁନି । ଶୁକ୍ରା ମାଆ କହୁଥିଲା ପାହାଡ଼ ସେ ପାଖରୁ ଗୋଟାଏ ହେଟା ଆସିଚି ଦି ଦିନ ହେଲା । ହଁ ଶୁଣ, ତୋ ବାଆ ପାଖରେ ଆଜି

ଖାଇବାଟା ବି ପହଞ୍ଚେଇ ଦେବୁ । ମୁଁ ଆଜି ଯାଇ ପାରିବିନି । ବେଳତ କାନ୍ଧ ଉପରକୁ ଉଠିଲାଣି । ନୂଆଁଣିଆ ଚାଳ ଉପରେ ମାଡ଼ି ଯାଉଥିବା ପୋଇ ଡଙ୍କାରୁ ଦି'ଟା କାଟୁ କାଟୁ ସେ କହିଲେ ।

ସୁମତି ସ୍ଥାନୀୟ ବଡବିଲ କଲେଜରେ ପ୍ଲସ୍ ଥ୍ରୀର ଦ୍ୱିତୀୟ ବର୍ଷର ଛାତ୍ରୀ । କଲେଜଠାରୁ କିରିବୁରୁ ପାହାଡ଼ ଆଡ଼କୁ ଯାଇଥିବା ଜଂଗଲ ରାସ୍ତାରେ ତାର ଘର । ଦୂରତ୍ୱ ବୋଧେ ଦୁଇ ମାଇଲରୁ କିଛି ବେଶି । ଗାଁ ଗାଁ ଓ ସହର ସହର ଦେଇ ରହି ଆସିଚି କୋଉ ଯୁଗରୁ । ସୃଷ୍ଟିର ଆବହମାନ କାଳରୁ ଏଇ 'ଅଛି' ଓ 'ନାହିଁ'ର ଭାରତବର୍ଷ ଭିତରେ ଗୋଟାଏ ଶୀତଳ ଯୁଦ୍ଧ ବରାବର ଚାଲି ଆସୁଥିଲେ ମଧ ସେଇ 'ନାହିଁ'ଟି ଅବଧାରିତ ସତ୍ୟ ଭାବରେ 'ଅଛି' ଆଗରେ ହାତଟେକି ଆତ୍ମଗର୍ବ ପ୍ରକାଶ କରି ଆସୁଥାଏ । ସୁମତି ଆଜି ସେଇ ସତ୍ୟକୁ ମିଥ୍ୟା ବୋଲି ପ୍ରମାଣିତ କରିବାକୁ ଗଣତାନ୍ତ୍ରିକ ସମାଜବାଦର ମୁଖାଟିଏ ପିନ୍ଧି ଶାସନର ସଖି କଣେଇ ପରି ଠିଆ ହେଇଚି ଦୁଇ ଜଣଙ୍କ ମଝିରେ । ଦୁଇ ତଟ ଭିତରେ ସମ୍ପର୍କ ରକ୍ଷା କରିବାକୁ ତଟିନୀ ମଝିରେ ଶୋଇ ପଡ଼ିଥିଲା ପରି । ଦୁଇ କୂଳର ସମ୍ପର୍କ ଯୋଡ଼ିବାକୁ ଯାଇ ପୋଲଟିଏ ପିଠି ଦେଖେଇ ଦେଇଥିଲାପରି ।

ସୁମତି ତାର ପାଠ ପଢା ପାଇଁ ସରକାରରୁ ସବୁ ସାହାଯ୍ୟ ପାଏ । ସେ ସାହାଯ୍ୟରେ ତାର କେବେ ହେଳା ହୁଏନା । ତେଣୁ ସେ ଯେତେବେଳେ କଲେଜରେ ଥାଏ ସେତେବେଳେ ସେ 'ଅଛି' ର ପ୍ରତିନିଧିତ୍ୱ କରୁଥିବା ବେଳେ ସେ ଯେତେବେଳେ କଲେଜରୁ ଦୀର୍ଘ ଅଢେଇ କିଲୋମିଟରା ରାସ୍ତା ସାଇକେଲରେ ଅତିକ୍ରମ କରି ଗାଁରେ ନିଜ ଘରକୁ ଫେରି ଆସେ ସେ ନେତୃତ୍ୱ ନିଏ 'ନାହିଁ'ର ଅଭାବନୀୟ ଅବସ୍ଥାମାନଙ୍କର ଯୋଉଠି ଗୋଟାଏ ଓଳିର ଖାଦ୍ୟ ପାଇଁ ସେ ନାରକୀୟ ଜୀବ ଗୁଡ଼ାକ ଦିନକୁ ବାର ଘଣ୍ଟା ମାଟିରେମୁହଁମାଡି ପଡ଼ି ରହନ୍ତି । ସୁମତିର ବାପା କଦବା କେତେବେଳେ ଠିକାଦାରର ଦୟା ହେଲେ ପାଖ ଲୁହା ପଥର ଖଣିରେ ଦିନ ମଜୁରିଆ ହିସାବରେ କାମ କରେ ନଚେତ ସେ ପାହାଡ଼ ତଳି ଜଂଗଲ ପାଖରେ ଚାଷ କରି ପେଟ ପୋଷେ । ଏହାହିଁ ସେ ଅଞ୍ଚଳର ଆଦିବାସୀର ଜୀବନ । ସେମାନେ ନିର୍ଭର କରନ୍ତି ସେମାନଙ୍କ ଭାଗ୍ୟ ଉପରେ ।

ସୁମତି ଆଗରେ ଦୁଇଟି ଭିନ୍ନ ଦୁନିଆ । ଗୋଟିକରେ ଆଲୋକର ଅଫୁରନ୍ତ ଉତ୍ସ । ଅନ୍ୟଟିରେ ଅମାପ ଅନ୍ଧକାରର ଉର୍ଦ୍ଧ୍ୱଶ୍ୱାସ । ଏକ ଅନାକାଂକ୍ଷିତ ଏବଂ ଅପାଙ୍କ୍ତେୟ ସ୍ଥାୟୀ ଅମାବାସ୍ୟାର ଅନ୍ଧାର । ଏକ ନିର୍ଜନ୍ମ ଆକାଶର ଅଫୁରନ୍ତ ଅଭିସାର । ଦୁଇଟି ଗୋଲକକୁ ଦୁଇଟି ହାତରେ ଧରି ସୁମତି ଠିଆ ହେଇଚି ମଝି ରାସ୍ତାର ଅନ୍ଧଗଳିରେ । ସମସ୍ତେ ତାକୁ ଦେଖୁଚନ୍ତି କିନ୍ତୁ ସେ କାହାକୁ ଦେଖୁନି ।

ରାଜନୀତି ଏକ କର୍ଦ୍ଦମାକ୍ତ ପୋଖରୀର ପାଣି । ସେ ପାଣିକୁ ଯେଉଁମାନେ ଗଂଗାଜଳ ବୋଲି ମନେ କରନ୍ତି ସେମାନେ ତାକୁ ପିଇଯାଆନ୍ତି ଆଞ୍ଜୁଳା ଆଞ୍ଜୁଳା କରି । ଏବଂ ଯେଉଁମାନେ ତାକୁ ଅସ୍ୱାସ୍ଥ୍ୟକର ବା ଅପବିତ୍ର ମନେ କରନ୍ତି ସେମାନଙ୍କୁ ନିଯୋଜିତ କରାଯାଏ ସେ ପୋଖରୀର ପଙ୍କୋଦ୍ଧାର ପାଇଁ ।

ଆବର୍ଜନା ସଫା କରିବାର ପ୍ରୋସେସ୍ ଆମର ଆରମ୍ଭ ହୋଇଚି ଅନେକ ଦିନୁ । ସେ ପ୍ରୋସେସର ଯୁଗ କେବେ ସରିନାହିଁ କି ସରିବ ନାହିଁ । ମେରୁର ମଥାରେ ଯେମିତି କେବେ ସୂର୍ଯ୍ୟ ଉଠେନା, ତଥାପି ମେରୁ ଅପେକ୍ଷା କରେ ସେଇ ସୀମାହୀନ ଆଶା ଓ ଆକାଂକ୍ଷାର ସୁଦିନକୁ । ସେ କଅଣ ଜାଣେଁ ସୂର୍ଯ୍ୟ ତାକୁ ଯୁଗ ଯୁଗ ହେଲା ପ୍ରତାରିତ କରି ଆସୁଚି । ଏବଂ ଚିରଦିନକୁ ପ୍ରତାରିତ କରିବ ମଧ । ସେ କଅଣ ଜାଣେ ତା ଭାଗ୍ୟାକାଶରେ ସୂର୍ଯ୍ୟର ସୀମାରେଖା ଦିଗବଳୟ ତଳେହିଁ ଆଙ୍କିଦିଆଯାଇଛି । ଆହା, ବିଚାରୀ ମେରୁମାନେ । କେତେ ହନ୍ତସନ୍ତ ହେଉ ନାହାନ୍ତି ସତେ ଆଲୁଅ ଟିକକ ପାଇଁ । ଅନ୍ଧକାରର ଅନ୍ଧକୂପ ଭିତରେ ସେମାନେ କେତେ ଜୀବନ ଯନ୍ତ୍ରଣାରେ ସନ୍ତୁଳିତ ହେଉ ନାହାନ୍ତି ?

ସୁମତି ସେ ଦିନ ହସି ଦେଇଥିଲା । ସେଥିପାଇଁ ଯେ ଏଇ କେତେଦିନ ହେଲା ଭୁଲ ବିଛାର ଏକ ଅଦ୍‌ଭୁତ ମାନସିକତା ତାକୁ ଜଂଗଲର ଚିତ୍ରିତ ହରିଣୀ ପରି ବାଟ ଉଗାଳୁଚି । ଭୂତ କବଳରୁ ରକ୍ଷା ପାଇବା ପାଇଁ ସୁମତି ଅନେକ ଥର ଚେଷ୍ଟା କରିଚି କୋଉ ଏକ ଅଜଣା ମନ୍ତ୍ର ବଳରେ ।

ରଂଜନ ଏକ ଧନୀ ବଣିକର ପୁତ୍ର ହେବ ବୋଧେ । ବାପା ତାର ଖଣି ମାଲିକ । ସହରର ଉପାନ୍ତରେ ବିଶାଳ କୋଠା । ପ୍ରତିଦିନ ଗୋଟାଏ ଗୋଟାଏ କାରରେ ସେ କଲେଜ ଆସେ ।

ସୌମ୍ୟ ସୁଦର୍ଶନ । ପଢ଼େବି ଭଲ । କ୍ରିକେଟ ଖେଳେ । ଅଭିନୟ ମଧ କରେ । ଅନେକ ଥର ସେ ଅନୁରୋଧ କରିଚି ସୁମତିକୁ ତା ସହିତ କଲେଜ ଡ୍ରାମାରେ ଅଭିନୟ କରିବାକୁ, କିନ୍ତୁ କାହିଁକି ? ସୁମତି ପାଖରେ ରଂଜନ ଏମିତି କଅଣ ଦେଖିଚି ଯେ ଯାହାପାଇଁ ସେ ସୁମତିକୁ ବାରମ୍ବାର ଅନୁରୋଧ କରିଚି । ସେଦିନ ଅର୍ଥନୀତି ଅଧାପକ ତାକୁ କହୁଥିଲେ ତମେ ରାଜି ହୁଅ ସୁମତି । ରଂଜନ କହୁଚି ତମେ ହିଁ ସେ ଭୂମିକା ପାଇଁ ଏକମାତ୍ର ଛାତ୍ରୀ । ଏଥର ନାଟକଟି ଦିଲ୍ଲୀ ଯୁଥ ଫେଷ୍ଟିଭାଲକୁ ଯିବାର ଅଛି । ନାଟକଟି କୁଆଡ଼େ ପରୀକ୍ଷାଧର୍ମୀ ।

କି ପରୀକ୍ଷା ? କାହାପାଇଁ ପରୀକ୍ଷା ? କାହାକୁ ନେଇ ଏ ପରୀକ୍ଷା ? ସେ ପରୀକ୍ଷାଗାରରୁ କି ସଲ୍ୟୁସନ ଉଦ୍‌ଭାବିତ ହେବ ?

ଦୀର୍ଘ ପଚାଶ ବର୍ଷର ପରୀକ୍ଷାଗାରର ଧ୍ୱଂସସ୍ତୁପ ଭିତରୁ ଯାହା ବାହାରିଚି ସୁମତି ତାରି ଉପରେ ଥରେ ଆଖି ବୁଲେଇ ଦେଇଥିଲା । ଭାଜ୍ୟ, ଭାଜକ ଓ ଭାଗଫଳତ ସବୁ ତା ସାମନାରେ ଥୁଆ ହେଇଚି । କଲେଜର ସବୁ ପାଠ ଭିତରେ ସେ ତାକୁ ପରଖି ସାରିଲାଣି । ରାଶି ରାଶି ପୁସ୍ତକର ଗଦା ଗଦା ଘୋଷା ପାଠତ କଲେଜ ବାହାରକୁ ଆସିବା ମାତ୍ରେ ଅଚଳ ମୁଦ୍ରା ପରି ରାସ୍ତା କଡରେ ପଡ଼ି ରହୁଚି । ପରୀକ୍ଷାଧର୍ମୀ ନାଟକର ସମସ୍ତ ଡାଇଲଗ୍ତ ସେ ବରାବର ଘରେ ବାହାରେ ସବୁଠି ଶୁଣି ଆସୁଚି । ଆଉ କେତେ ପରୀକ୍ଷା ହେବ ? ପରୀକ୍ଷାର ସମସ୍ତ ଉପାଦାନତ ଏବେ ସରିସରି ଆସୁଚି ।

ସୁମତି ଆଉ ଥରେ ହସି ଦେଲା ଏବଂ ଭାବିଲା ଆଦିବାସୀ ଘରେ ଜନ୍ମ ନେଇ ଯଦି ତା ପାଖରେ ନାଟକର ନାୟିକା ଭୂମିକା ପାଇଁ ପ୍ରକୃତରେ କିଛି ଥାଏ ତେବେ ସେ ତାକୁ ଜୀବନର ବାସ୍ତବ ନାଟକରେ ହିଁ ପ୍ରୟୋଗ କରିବ । ସେଥିରେ ସାର୍ଥକତା ଅଛି । ପୂର୍ଣ୍ଣତା ଅଛି । ସେ ସାର୍ଥକତା/ ପୂର୍ଣ୍ଣତା ଦେବାର ବର୍ଣ୍ଣାଢ୍ୟ ମାନସିକତା ଗଂଜନ ଠାରେ ଥିବାର ସମ୍ଭାବନା ନାହିଁ । କଲେଜର ନାଟକ ବାସ୍ତବତା ଠାରୁ ଅନେକ ଦୂରରେ । ତେଣୁ ତାକୁ କ୍ଷଣିକର ସ୍ୱପ୍ନ ବିଭୋରତା ପାଇଁ ଆପଣେଇ ନେବାର କିଛି ମାନେ ହୁଏନା ।

ଗଂଜନତ ସେଇମାନଙ୍କର ପ୍ରତିନିଧି ଯେଉଁମାନେ ଆଜି ପଚାଶ ବର୍ଷର ପରୀକ୍ଷା ନିରୀକ୍ଷା ଭିତରେ ଶହ ଶହ ସୁମତିକୁ ସେକି ସନ୍ତୁଳି ଶେଷ କରି ସାରିଲେଣି ।

ସୁମତି ମନା କରିଦେଲା ।

କିନ୍ତୁ ତା ସତ୍ତ୍ୱେ କଲେଜ ଡ୍ରାମା ପରେ ବି ସେ ଆଜି ସୁମତି ପାଖରେ ହାତ ପାତି ଠିଆ ହେଇଚି । କହୁଚି, ହେଇ ଦଖ, ମୁଁ ଅର୍ଜୁନ । ମୁଁ ଯେଉଁ ଅଦୃଶ୍ୟ ଗଛ ଡାଳରେ ଲୁକ୍କାୟିତ ଚଢ଼େଇର ଆଖିକୁ ଶର ଯୋଖିଚି ସେ ଶର କେବଳ ତମରି ଅନୁମତିର ଅପେକ୍ଷାରେ ।

ସୁମତି ଅନେକ ଅସ୍ଥିରତାରେ ଗୁମସୁମ ହେଇ ଉଠିଲା । ଛୋଟ ଲାଲ ବିଛାଟି କେଉଁଠି କେମିତି ଲୁଚିଗଲା ଯେ ସେ ତାକୁ ଯେତେ ଚେଷ୍ଟା କଲେ ମଧ ଧରି ପାରିଲା ନି ।

ସେ ଆଉ ପାଠ ପଢ଼ି ପାରିଲାନି । ମାଆର କଥା ଅନୁସାରେ ସେ ଉଠିଗଲା ଘର କାମ ପାଇଁ । ଆଗ ଛେଳି କଥା । ତାପରେ ସେ ଯିବ ବିଲକୁ ବା' ପାଇଁ ଖାଇବା ନେଇ । ସେ ତେଣେ ଅପେକ୍ଷା କରିଥିବ । ଖରା ଅନେକ ଉପରକୁ ଉଠି ଗଲାଣି ।

ସୁମତି ପାଇଁ ଜୀବନଟା ଖାଲି ଜୀବନ ନୁହେଁ । ଯନ୍ତ୍ରଣାର ଗୋଟାଏ ନୂତନ ଇସ୍ତାହାର । ସେ ଇସ୍ତାହାରର ପ୍ରତ୍ୟେକ ପୃଷ୍ଠା, ପ୍ରତ୍ୟେକ କଥା ଓ ଉପକଥା ଏକ ଅସରନ୍ତି ବେଦନାର ଆର୍ତ୍ତ ଇତିହାସ । ତା ଭିତରୁ ମୁକ୍ତି କାହିଁ ଯେ ସେ ଅନ୍ୟ କଥା ଭାବିବ ? ସ୍ୱପ୍ନ କେବଳ ତା ପାଇଁ ସ୍ୱପ୍ନ ହେଇଯାଇଚି ଆକ୍ଷରିକ ଅର୍ଥରେ । ତା ପାଇଁ ରାତି କାହିଁ ଯେ [illegible] ଦେଖିବ ? ରାତ୍ରୀର ଗଭୀରତା ଭିତରେ ଜୀବନଟା ତାର ଏମିତି ଦଳି ପେଷି ହେଇ[illegible] ଯେ ସେଠି ସ୍ୱପ୍ନ ଜନ୍ମ ଆଗରୁ ଆପେ ଆପେ ତାର କବର ରଚି ନେଇଥାଏ ।

ସେଦିନ ସତକୁ ସତ କଲେଜ ଲେଉଟାଣି ମହୁଲ ବଣର ଜଂଗଲିଆ ରାସ୍ତା ଧରିଚି କି ନାହିଁ ଗଂଜନ ତାକୁ ବାଟ ଓଗାଳିଲା । ଡିସେମ୍ବରର ଆସନ୍ନ ସଂଧ୍ୟାର ପ୍ରବଳ ଥଣ୍ଡା ଭିତରେ [illegible] ସୁମତି ଦେହରୁ ଗମ ଗମ ଝାଳ ବହି ପଡ଼ିଲା । ତା ପାଟି ଅଟକି ଅଟକି ଗଲା । ଗଳା ଶୁଖି ଆସିଲା । ସେ ଏମିତି ଅବସ୍ଥାରେ ଗଂଜନକୁ କେବେ ଭେଟିବ ବୋଲି ମୋଟେ ଆଶା କରି ନଥିଲା ।

ତୁମେ ମୋ ଚିଠିର ଉତ୍ତର ଦେଲନି ଯେ ?

ସୁମତି ଚୁପ୍ ।

ମୋ ଚିଠିତ ତୁମେ ନିଶ୍ଚୟ ପାଇଚ ?

ସୁମତି ଚୁପ୍ ।

ତୁମେ କିଛି କୁହ ସୁମତି ?

ସୁମତି ଚୁପ୍ । ତା ଆଖି ସିଧା ତଳକୁ । ଚେଷ୍ଟାକରି ମଧ ସେ ମୁହଁ ଟେକି ରଂଜନ ଆଖିକୁ ଅନେଇ ପାରିଲାନି । କିଛି ସମୟ ବିତିଗଲା ଏମିତି ।

ତୁମେ କିଛି କହିବନି ତେବେ ?

ଭାଙ୍ଗି ପଡୁଥିବା କାରୁଣ୍ୟର ଏକ ନୂତନ ଫର୍ଦ୍ଦ ରଂଜନ ଗଳାରେ ଫିଟି ଆସୁଚି ।

ସୁମତି ତଥାପି ନିରବ । ଏଥର ଦମ୍ଭ ସଂଚୟ କଲା ସୁମତି । ଖୁବ ଧୈର୍ଯ୍ୟର ସହିତ ନିଜର ହାତମୁଠା ଓ ପାଦତଳ ପରୀକ୍ଷା କରି ଦେଖିଲା ଯେ ସେ ଠିକ୍ ଅଛି । ସେ ଅନ୍ତତଃ ଠିକ୍ ଭାବେ ଠିଆ ହେଇପାରିଚି । ସାଇକେଲ ହେଣ୍ଡେଲଟି ମଧ ତା ହାତ ମୁଠାରେ ଦୃଢ଼ ଅଛି । ଖୁବ ଆସ୍ତେ ଆସ୍ତେ ସେ ସାଇକେଲ ଆଗକୁ ଗଡେଇବାକୁ ଚେଷ୍ଟାକଲା ଏବଂ ପୁଣି କଅଣ ଭାବି ସେ ସେତିକି ପଛେଇ ଆସିଲା ।

ସମ୍ପୂର୍ଣ୍ଣ ନିଛାଟିଆ ଜଂଗଲ ରାସ୍ତାରେ ନୀରବତାର ଅଖଣ୍ଡ ରାଜତ୍ୱ । ଧାଡ଼ି ଧାଡ଼ି ଶାଳବଣର ପତ୍ର ଦେହରେ ପବନର ସିଁ ସିଁ ଶବ୍ଦ ସେ ନୀରବତାକୁ ଆହୁରି ଅଦ୍ଭୁତ କରି ଦେଉଥାଏ ।

ରଂଜନ ସେମିତି ଠିଆ ହେଇଚି ବାଟ ମଝିରେ ।

ସୁମତି ପୁଣି ଅଟକିଗଲା । ଗୋଟାଏ ବିରାଟ ପାହାଡ଼ ଯେମିତି ତା ବାଟ ଆବୋରି ଠିଆ ହେଇଚି । ସେ ପାହାଡ଼କୁ ଧକ୍କା ମାରି ତା ରାସ୍ତାରୁ ହଟେଇ ଦେବ କି ତାକୁ ଆଡେଇ କରି ଚାଲିଯିବ ସେକଥା ସେ ଚିନ୍ତା କରିପାରୁନଥିଲା ।

କିଛି କୁହ ସୁମତି, ପ୍ଲିଜ୍ ।

ସୁମତି ଆଉ ଟିକିଏ ଧୈର୍ଯ୍ୟ ସଂଚୟ କଲା । କିନ୍ତୁ ଯେତେ ଚେଷ୍ଟା କଲେ ମଧ ସେ ଉପରକୁ ମୁହଁ ଟେକି ପାରିଲାନି । ସାଇକେଲ ହେଣ୍ଡେଲଟିକୁ ଖୁବ୍ ଶକ୍ତ କରି ଧରି ସେ ଧୀର ସ୍ୱରରେ କହିଲା, ''ମୋ ବାଟଟା ଦୟାକରି ଛାଡ଼ିଦିଅ ।''

ରଂଜନ ଗୁମ୍ ମାରି ସୁମତିକୁ ଅନେଇ ରହିଲା । ବାରୁଦର ବିସ୍ଫୋରଣରେ ପାହାଡ଼ ସବୁ ଯେମିତି ଭାଙ୍ଗି ଚୂରମାର ହେଇଯାଉଥିଲା ତା ଆଗରେ । ସମସ୍ତ ଅରଣ୍ୟ ଏକାଥରେ କାନ୍ଦି ଉଠୁଥିଲେ ଯେମିତି ।

"ଏ ବାଟତ ତୁମର ନୁହେଁ," ଟିକିଏ ରହି ସୁମତି ପୁଣି କହିଲା । ଏତେବେଳେ ସେ ଗଂଜନକୁ ଅନେଇଲା ଆଖିରେ ଆଖି ମିଶିବା ମାତ୍ରେ ଗଂଜନ ମୁହଁ ତଳକୁ କଲା ।

ସୁମତି ଆଉ ଟିକିଏ ସାହସ ପାଇଲା । ତାପରେ ସେ ଦେଖିଲା ତା ସାମନାରେ ବାଟ ପରିଷ୍କାର ହୋଇ ଯାଇଚି । ସେ ଧୀରେ ଧୀରେ ଆଗକୁ ସାଇକେଲ ଗଡେଇଲା ଏବଂ ତା ପରେ ସେ ପେଡାଲରେ ଗୋଡ ଦେଲା ।

ସେ ଆଉ ପଛକୁ ଦେଖିନାହିଁ । ଆଗକୁ ମାଡ଼ି ଯାଇଛି । ଗଡ଼ାଣିଆ ବାଟଟାରେ ସାଇକେଲ ତୀର ବେଗରେ ଛୁଟି ଚାଲିଚି । ପାହାଡ଼ିଆ ଥଣ୍ଡା ପବନରେ ତା ଦେହର ଝାଳ ଆସ୍ତେ ଆସ୍ତେ ଶୁଖି ଆସୁଥିଲା ଏବଂ ତାକୁ ଖୁବ୍ ହାଲ୍କା ଲାଗୁଥିଲା ।



# ପକ୍ଷୀର ଦୁଇଟି ଡେଣା

ମୁଁ ସେଦିନ ଅପର୍ଣ୍ଣାକୁ ଏମିତି ଭାବରେ ଦେଖିବି ବୋଲି ଆଶା କରିନଥିଲି । ସାଧାରଣତଃ ମୁଁ ଯେତେବେଳେ ତା ଘରକୁ ଯାଏଁ, ବେଲ୍‌ରେ ହାତ ମାରିବା ମାତ୍ରେ ସେ ଦଉଡ଼ି ଆସେ ଓ କବାଟ ଖୋଲି ଦିଏ । ସେ ଆଗରୁ ଜାଣି ଥାଏ ମୋ ଆସିବା କଥା । ମୋତେ ମୋଟେ ବାହାରେ ଅପେକ୍ଷା କରିବାକୁ ପଡେ ନାହିଁ । ସବୁ ଯେମିତି ଅଟୋମେଟିକ୍ । କମ୍ପ୍ୟୁଟର କାମ କଲା ଭଳି ।

ଅପର୍ଣ୍ଣା ସହିତ ମୋର ସମ୍ପର୍କ ବେଶୀ ଦିନର ନୁହେଁ, ଏଇ ତିନି ଚାରି ବର୍ଷ ହେବ । ତା' ଠୁ କମ୍ ବି ହେଇ ପାରେ । ଅଚାନକ ଦେଖା ଗୋଟିଏ ମଲ୍‌ରେ । ସେ ବୋଧେ ଗ୍ରୀଟିଙ୍ଗସ୍ କାର୍ଡ କିଣୁଥିଲାକି ଏମିତି ବୁଲୁ ବୁଲୁ ସେଠି ଅଟକି ଯାଇଥିଲା କେଜାଣି । ଭଲ କାର୍ଡଟେ ଖୋଜୁଥିଲା ବୋଧେ । ଭାଲେଣ୍ଟାଇନ୍ ଡେ ଆଗରେ ଥିଲା ବୋଲି ମୁଁ ଏମିତି ଭାବୁଚି । ମୋର ବି ସେମିତି ଉଦ୍ଦେଶ୍ୟ ଥିଲା । ହଠାତ୍ କେମିତି କେଜାଣି ଦୁଇଟା ଚଏସ୍ ଗୋଟିଏ ବିନ୍ଦୁରେ ପହଞ୍ଚିଗଲେ । ତା ପରେ ଏପ୍ରିସିଏସନ ।

ସେଇଠୁ ମୋ ମୋବାଇଲ୍ ନମ୍ବର ତା'ଠି ଓ ତା ନମ୍ବର ମୋ' ଠି ।

ଆମେ ଏତେ ଶୀଘ୍ର ଏତେ ପାଖେଇ ଆସିବୁଁ ବୋଲି ମୋର ଧାରଣା ନଥିଲା । ଆମର କଥା ଗତି ଚାଲେ ବାରମ୍ବାର । ସମୟ ଜଣା ପଡେନି ।

ସେଇ ଅପର୍ଣ୍ଣା ଘରକୁ ସେଦିନ ଯାଇ ମୁଁ ଯେତେବେଳେ ବେଲ୍ ଚିପିଲି ପ୍ରାୟ ଦଶ ମିନିଟ ପରେ ସେ ଆସି କବାଟ ଖୋଲିଲା ।

ତା ମୁହଁ ଶୁଖିଲା ଦିଶୁଥିଲା । ଯେମିତି ରାତି ଯାକ ଶୋଇନି ।

କଅଣ ହେଇଚି ? ଦେହ ଭଲ ନାହିଁ ?

ନା, ସେମିତି କିଛି ନୁହେଁ, ସେ ମୋ ପାଖ ସୋଫାରେ ବସିଥିଲା ।

ତେବେ ? ତାର କୋଲଡ ରିସେପସନ ମୋତେ ଖରାପ ଲାଗୁଥିଲା ।

ମୋ ମୋବାଇଲ୍‌ରେ ଭାଇରସ୍ ପଶିଲା କି କଅଣ ? ସବୁ ଉଡିଯାଇଚି । କାଲି ରାତିରୁ ସବୁ ବ୍ଲ୍ୟାଙ୍କ୍ ହେଇ ଯାଇଚି ।

ମୋର ମନେ ହେଲା ସେ ଯେମିତି କାନ୍ଦି ପକେଇବ । ସେ ଦୁଇପାପୁଲି ମୁହଁ ଉପରେ ରଖି ପୋଛି ଆଣିଲା । ସତେ ଅବା ସବୁ ଦୁଃଖ ସେ ସେଥିରେ ପୋଛି ପକଉଚି ।

ମୁଁ ତାକୁ ସାନ୍ତ୍ୱନା ଦେବା ଉଦ୍ଦେଶ୍ୟରେ କହିଲି ଏଥିରେ ଏତେ ଦୁଃଖ କରିବାର କଅଣ ଅଛି ? ଅଳ୍ପ କିଛି ଦିନ ଭିତରେ ସବୁ ମିଳି ଯିବନି । ଏଇ କିଛି ଦିନ ପାଇଁ ସେମାନଙ୍କ ସହିତ ଲିଙ୍କ ଛିଣ୍ଡି ଯିବ, ଏଇ କଥାତ ?

ସେ ମୋର ଏ କଥାକୁ ଗ୍ରହଣ କରିବାକୁ ମୋଟେ ପ୍ରସ୍ତୁତ ନଥିଲା । କିଛିଦିନ ପାଇଁ ଲିଙ୍କ ଛିଣ୍ଡିଯିବ, କଥାଟାକୁ ସେ ସହ୍ୟ କରିପାରୁ ନଥାଏ ଯେମିତି ।

ହଉ ମୋବାଇଲ୍ ଟା ଦେଖି ।

କଅଣ ଆଉ ଦେଖିବ ? ମୁଁ ତାକୁ ଅଳିଆ ଗଦାକୁ ଫୋପାଡି ଦେଇଚି । ମୁଁ ଭାବୁଚି ମୁଁ ପାଗଳ ହେଇ ଯିବି କି ଆଉ ? ସେ ହତାଶ ହେଇ ମୋତେ ଅନେଇଲା ।

ମୁଁ କହିଲି ହଉ ହେଲା ଚାଲ ମୁଁ ଏଇନେ ତୁମକୁ ଗୋଟେ ନୂଆ ମୋବାଇଲ୍ କିଣି ଦେବି । ତା ପରେ ତମେ ଆସ୍ତେ ଆସ୍ତେ ସବୁ ସଂଗ୍ରହ କରି ପକେଇବ ।

ଯଦି ଚାହିଁବ ମୁଁ ତୁମକୁ କିଛିଟା ସାହାଯ୍ୟ ମଧ କରିବି ।

ସେ ମୋ ମୁହଁକୁ ଏମିତି ଅନେଇଲା ଯେମିତି ସେ ଗୋଟିଏ ନୂତନ ତଥ୍ୟର ସନ୍ଧାନ ପାଇଲା ।

ମୁଁ କହିଲି ଆଚ୍ଛା ଆମର କେତେଜଣ କମନ ବନ୍ଧୁ ଅଛନ୍ତି ସେମାନଙ୍କ ନମ୍ବର ମୁଁ ତୁମକୁ ଦେଇ ପାରିବି

ଧେତ୍ ସେ ଗୁଡାକତ ଡାଏରୀରେ ମିଳି ଯିବ । ଆଚ୍ଛା ତୁମ ପାଖରେ ଏଇ ନମ୍ବର ଅଛି କି ? ସୁରଭି ? ସୁରଭି ଦାସ ?

ମୁଁ ମୁଣ୍ଡ ହଲେଇଲି । ନାଁ, ନାହିଁ ।

କସ୍ତୁରୀ ? କସ୍ତୁରୀ ରାୟ ? ଆଚ୍ଛା ମିନୁ ? ମିନୁ ସାମଲ ?

ମୁଁ ଏମାନଙ୍କୁ ଜାଣିନି କହିଲି ।

ଚନ୍ଦ୍ରିକା ? ତାକୁ ତ ତୁମେ ଜାଣିଥିବ ? କବିତା ଲେଖେ ? ମୁଁ ତାକୁ ଚିହ୍ନେଇ ଦେଇ ନଥିଲି ସେ ଦିନ ବୁକ୍ ଫେଆରରେ ? ତୁମେତ ତା କବିତାର ଖୁବ୍ ପ୍ରଶଂସା କରୁଥିଲ ।

କେଜାଣି ମନେ ନାହିଁ । ମୁଁ ଉଠିଲି । ତା ସହିତ ଏ ପ୍ରକାର ଆଲୋଚନା ମୋତେ ଭଲ ଲାଗୁ ନଥିଲା ।

ତୁମେ ଚା ନପିଇ ଚାଲି ଯିବ ?

ମୁଁ ଅଟକି ଗଲି । ଅପର୍ଣ୍ଣା ହାତର ଚାର ସ୍ୱାଦ ଭିନ୍ନ । ତା' ପାଇଁ ତା ଚା'ର ଅକର୍ଷଣ ମୋତେ ସେଠି ଅନେକ ସମୟ ପର୍ଯ୍ୟନ୍ତ ଅଟକେଇ ରଖେ ।

*　　　　*　　　　*

ସେ ଦିନ ଶରତର ଗୋଟିଏ ନିର୍ମଳ ସଂଧ୍ୟା । ପୂର୍ଣ୍ଣମୀର ଜହ୍ନ ଉଠିବ ବୋଲି କେତେବେଳୁ ଘୋଷଣା କରିସାରିଲାଣି । ସମଗ୍ର ପୂର୍ବାକାଶରେ ତାର ରାଜତ୍ୱ ସେ ଜାହିର କରି ଦେଇଥାଏ । ଆଉ ବିପରୀତ ଦିଗରେ ଘଞ୍ଚ ଜଙ୍ଗଲ ଭିତରେ ପେନ୍ଥା ପେନ୍ଥା ଫୁଲ । ରଙ୍ଗୀନ ପତ୍ର ଛାଇ ହେଇ ଯାଇଥାଏ । ତା ପଛରେ ଦିଗବଳୟ ତଳେ ଲାଲ କୁଙ୍କୁମ ବୋଳା ଆକାଶ ସୁଚନା ଦେଉଥାଏ ସୂର୍ଯ୍ୟ ଅସ୍ତ ହେଇ ସାରିଲେଣି ।

ମୁଁ ପହଞ୍ଚିଲି ସେଇ ସହରର ପଶ୍ଚିମ ପାଖରେ ଥିବା ନେସନାଲ ପାର୍କରେ ଯାହାକୁ ଏବେ ଏବେ କେନ୍ଦ୍ର ସରକାର ଜାତୀୟ ଉଦ୍ୟାନ ବୋଲି ଘୋଷଣା କରିଛନ୍ତି । ପାର୍କର ଏଇ ଜାଗାଟା ଅତ୍ୟନ୍ତ ମନୋରମ । ଗୋଟିଏ ହ୍ରଦ । ଚାରି ପାଖରେ ତିଆରି ହେଇଚି ଗୋଟିଏ ପ୍ରକାର ପତ୍ର କୁଡିଆ । ଲତା ପତ୍ରର ଘଞ୍ଚ ମୋଟା କାନ୍ଥ । ଫୁଲ ସବୁତା ଦେହରେ ନେସି ହେଇ ଯାଇଚି । ମୁଖ୍ୟତଃ ଏଇ ସବୁ କୁଡିଆ ବ୍ୟବହୃତ ହୁଏ ଯୋଡିମାନଙ୍କ ଦ୍ୱାରା । ଭାଲେଣ୍ଟାଇନ୍ ଡେ ବା ଅନ୍ୟାନ୍ୟ ଯେ କୌଣସି ପର୍ବ ପର୍ବାଣୀରେ ଏଠି ସ୍ଥାନ ପାଇବା ମୁସ୍କିଲ୍ । ବୟସର ବିଚାର କ୍ୱଚିତ ଥାଏ ।

କୁଡିଆ ଗୁଡିକର ନିର୍ମାଣ କୌଶଳ ଅଦ୍ଭୁତ । ଦୁଇଟା ଇଉକୁ ଉପର ଓ ତଳମୁହାଁ କରି ରଖିଦେଲେ ଯେମିତି ଦେଖାଯିବ । ତା ଭିତରେ ଗୋଟିଏ ସିମେଣ୍ଟ ବେଞ୍ଚ, ଯୋଉଥିରେ ମାତ୍ର ଦୁଇ ଜଣ ହିଁ ବସି ପାରିବେ । ଠିକ୍ ସେମାନଙ୍କ ପଛ ପାଖରେ ଥିବେ ସେମିତିକା ଆଉ ଗୋଟିଏ ବେଞ୍ଚରେ ଆଉ ଦୁଇ ଜଣ । କେହି କାହାକୁ ଦେଖି ପାରିବେନି । କିନ୍ତୁ ଚେଷ୍ଟା କଲେ ହୁଏତ ପରସ୍ପରର କଥା ଶୁଣି ପାରିବେ ।

ମୁଁ କିଛି ସମୟ ଖୋଜିଲା ପରେ ଗୋଟିଏ ଖାଲି ଥିବା କୁଡିଆ ପାଇଗଲି ଏବଂ ବେଞ୍ଚରେ ବସି ଗୋଡ ହଲେଇବାକୁ ଲାଗିଲି ।

ସଂଧ୍ୟାଟା ଆହୁରି ଶୀଘ୍ର କାହିଁକି ମାଡି ଆସୁନାହିଁ ବୋଲି ଭାବୁଥିଲି ।

ସଂଧ୍ୟା ଯେତେ ଶୀଘ୍ର ଆସିବ ଜହ୍ନର ଜୁଆର ସେତିକି କୂଳ ଉଛୁଳେଇ ମାଡି ଆସିବ । ହ୍ରଦଟା ସେତିକି ଖିଲି ଖିଲି ହୋଇ ହସି ଉଠିବ ।

ମୁଁ ଘଡି ଦେଖିଲି । ବେଶୀ ନୁହେଁ । ମାତ୍ର ସାଢେ ପାଞ୍ଚଟା । ଏ ଇ ମାତ୍ର ଅତିକ୍ରମ କରି ଯାଉଚି । ଛଅଟା ବାଜିବାକୁ ଯଥେଷ୍ଟ ସମୟ ଅଛି । ମୋତେ ଆହୁରି ଅଧଘଣ୍ଟା ଅପେକ୍ଷା କରିବାକୁ ହେବ ।

ମୋ ପଛପଟେ ଗୋଟିଏ ଯୋଡି ସ୍ଥାନ ଦଖଲ କଲେ ବୋଧେ । ବେଶ୍ ସତର୍କତାର ଗୋଟେ ଚାପା ଚାପା କଥା । ମୋବାଇଲ ଭାଇବ୍ରେସନ୍ ମୁଡ୍‌ରେ ଥିଲା ପରି । ମୋବାଇଲ୍ ବି ଜାଣେଁ ସୌଜନ୍ୟ ରକ୍ଷା କରି । ସେ କାହାକୁ ଡିଷ୍ଟର୍ବ କରେନା । ସେ ମଧ ଚାହେଁ ତାକୁ କେହି ଡିଷ୍ଟର୍ବ ନକରନ୍ତୁ ।

ପଛପଟୁ ଚାପା ଆଳାପର ମଧୁର କିନ୍ତୁ ଅସ୍ପଷ୍ଟ ଶବ୍ଦ ବେଳେବେଳେ ଭାସି ଆସୁଥିଲା । ଫିସ୍ ଫିସ୍ କଥାରେ ଶବ୍ଦମାନେଧରା ପଡନ୍ତି ନାହିଁ । ବେଳେ ବେଳେ ଶବ୍ଦମାନେ ଅତ୍ମପ୍ରକାଶ କରିବାକୁ ଚାହୁଁ ନଥିବେ କୋଉ ଅଜ୍ଞାତ କାରଣରୁ ।

ମୋର ସେ ଆଡକୁ ନଜର ଦେବାର କୌଣସି ଆବଶ୍ୟକତା ନଥିଲା । କେହି ଦିଅନ୍ତି ନାହିଁ ମଧ । ତାହା ହିଁ ସୌଜନ୍ୟ । ମୋବାଇଲ୍‌ରେ କଥା ହେଲା ବେଳେ ଅନ୍ୟ ଜଣେ ସେ ଆଡକୁ କାନ ଦେଉ ନ ଥିଲା ପରି । ଗୋପନୀୟତା ଥାଉ କି ନଥାଉ । ତାହା ହିଁ ମୋବାଇଲ୍ ସଂସ୍କୃତି । ତାକୁ କେହି ଅନ୍ୟଥା ଭାବେ ନାହିଁ ।

ମୁଁ ଘଡିକୁ ଦେଖିଲି । ଆରେ ସ୍ଲୋ ଚାଲୁଛିନା କଅଣ ? ବନ୍ଦ ହେଇ ଯାଉଚିକି ? କାହିଁ ନା ତ, ତେବେ ?

ଖୁବ୍ ଉଚ୍ଚ ଦେବଦାରୁ ଗଛର ଗହଳି ଭିତରେ ଛାଇ ଅନ୍ଧାର ଆସନ ବିଛେଇଲାଣି । ମୁଁ ବାଦାମ ପାକେଟ୍‌ଟାକୁ ଖୋଲିଲି, ପୁଣି ବନ୍ଦ କରିଦେଲି । ମୋବାଇଲ୍ ଉଠେଇଲି । ତା ପରେ ସଚେତନ ହେଇଗଲି । ଏତେ ଶାନ୍ତ ନୀରବତା ଯେ ସାମାନ୍ୟ ଭାଇବ୍ରେସନ ମଧ ଶବ୍ଦର ଝଙ୍କାର ତୋଳେ ।

ମୁଁ ସାମନାକୁ ଦେଖୁଥିଲି । ସିଧା ସାମନାକୁ । ଜହ୍ନ ମୋ ଆଡକୁ ହ୍ରଦର ଢେଉ କାଟି ଆସୁଥିଲା ।

ପଛପଟ ମୋବାଇଲର ଭାଇବ୍ରେସନ ଭାଙ୍ଗି କ୍ଷୀଣ ସ୍ୱରଟିଏ ଭାସି ଆସିଲା । "ତୁ ବ୍ୟସ୍ତ ହେବୁନି ବୋଉ । ପ୍ରାକଟିକାଲ କ୍ଲାସଟା ଡେରିରେ ଆରମ୍ଭ ହେଲା । ଆଉ ଅଧଘଣ୍ଟାଏ ଭିତରେ ସରିଯିବ ତାପରେ ଆସିଯିବି ।"

କିଏ, କିଏ ଇଏ ? କାହାର ଏ ସ୍ୱର ? ମୁଁ ଆଉ ଥରେ କାନେଇଲି । ନା, ମୋବାଇଲ ଅଫ୍ ହେଲା । ସେମାନେ ସମ୍ପୂର୍ଣ୍ଣ ଚୁପ୍ ହେଇଗଲେ । ନିଜର ଚତୁରତାରେ ସେ ଗର୍ବରେ ଫୁଲି ଉଠିଥିବ ନିଶ୍ଚୟ । କିନ୍ତୁ ସ୍ୱର ମୋତେ ବେଶ ପରିଚିତ ମନେ ହେଲା । ଅପର୍ଣ୍ଣା ନା ଆଉ କିଏ ? ଅପର୍ଣ୍ଣା ନିଶ୍ଚୟ ମୋ ଭିତରେ ଗୋଟାଏ ଅସମ୍ଭବ ଅସ୍ଥିରତା ମୁଣ୍ଡଟେକି ଉଠୁଥିଲା । ମୁଁ ସେଠି ଆଉ ଅପେକ୍ଷା କରିବି କି ନା ଚିନ୍ତା କରି ପାରୁନଥିଲି । ଚନ୍ଦ୍ରିକା ତଥାପି ଆସି ନଥିଲା ।



ପଶ୍ଚିମା - ୨୦୦୯

# ଅକ୍ଷତକ୍ଷତ

ଦୀର୍ଘ ରେଳଯାତ୍ରା ମୋର ଏକ ପ୍ରକାର ଅଭ୍ୟାସରେ ପରିଣତ ହୋଇ ଗଲାଣି । ସର୍ଟ ନୋଟିସ୍‌ରେ ମଧ ବାହାରିବାକୁ ପଡେ । ବିଶେଷ କରି ଦିଲ୍ଲୀରୁ କଲିକତା, ମାଡ୍ରାସ୍ ଏବଂ ଭୁବନେଶ୍ୱର ମୋତେ ପ୍ରାୟ ଯିବାକୁ ପଡେ । ମାସକୁ ଥରେ ଦି' ଥର ନିଶ୍ଚୟ । ଜରୁରୀ ଦରକାର ହେଲେ ବିମାନରେ ମଧ ଯାଏଁ । ତେବେ ବେଶୀ ଭାଗ ଟ୍ରେନ୍‌ରେ । କାରଣ ରାସ୍ତାରେ ମଧ ଅନେକ ସମୟରେ କାମ ଥାଏ ।

ଗୋଟିଏ ମଲଟି ନେସନାଲ କମ୍ପାନୀରେ କାମ କଲେ ଏମିତି ହେବାକୁ ବାଧ । ମଝିରେ ମଝିରେ ବାହାରକୁ ମଧ ଯିବାକୁ ପଡେ । ତେବେ ସେତେ ବେଶୀ ନୁହେଁ । କାନାଡାର ଗୋଟିଏ ବିଖ୍ୟାତ ମଲଟି ନେସନାଲ କମ୍ପାନୀର ଶାଖା ଭାରତର ସବୁ ବଡ ବଡ ସହରରେ ଅଛି ।

ଟ୍ରେନ୍ ଯାତ୍ରାର ଗୋଟିଏ ବଡ ସୁବିଧା ହେଲା ଲୋକ ସମ୍ପର୍କ ବଢେ । ଦୀର୍ଘ ଦଶ ପନ୍ଦର ଘଣ୍ଟା ଭିତରେ ବେଳେ ବେଳେ ବନ୍ଧୁତାର ବନ୍ଧ ଏମିତି ବାନ୍ଧି ହୋଇଯାଏ ଯେ ତାହା ନିଜ ଅଜାଣତରେ ଗୋଟିଏ ଆଶୀର୍ବାଦରେ ପରିଣତ ହୋଇଯାଏ । କିନ୍ତୁ ସେଥର ମୋର ଶ୍ରାବଣୀ ଭାଟନଗର ସହିତ ପରିଚୟ ଥିଲା ଭିନ୍ନ ପ୍ରକାରର । ସାଧାରଣତଃ ନାରୀ ମାନଙ୍କ ସହିତ ସଂପର୍କ ଥରେ ସ୍ଥାପିତ ହେଲେ ପ୍ରାୟ ଛିଣ୍ଡେନା । ଯଦିବା କେତେବେଳେ ଛିଣ୍ଡେ ତାହା ଅସ୍ୱାଭାବିକ ଭାବରେ । ସେତେବେଳେ ହୁଏତ ସମ୍ପର୍କଟା ଆସିଥାଏ ଗୋଟିଏ ଅସଂଲଗ୍ନ କାରଣରୁ । କିନ୍ତୁ ଶ୍ରାବଣୀ ସହିତ ମୋର ସମ୍ପର୍କ ଥିଲା ଯେତିକି ଆକସ୍ମିକ, ଅଯାଚିତ, ସେତିକି ମଧ ଥିଲା ଅଫୁରନ୍ତ ଆନନ୍ଦର ଉତ୍ସ । ସେମିତି ବି ଥିଲା ଏକ ବିୟୋଗାନ୍ତକ ନାଟକର ଶେଷ ଦୃଶ୍ୟର ଅନ୍ତିମ ପର୍ଯ୍ୟାୟ । କରୁଣ ରାଗରେ ବିମଣ୍ଡିତ ମହ ମହ ବାସ୍ନା ।

ମୋ ସ୍ତ୍ରୀ ଏସବୁ କଥା ଜାଣିଚନ୍ତି । ମୁଁ ତାଙ୍କୁ ଏ କଥା ଲୁଚେଇ ପାରି ନାହିଁ । ଲୁଚେଇବାର ଆବଶ୍ୟକତା ମଧ ନଥିଲା । କିନ୍ତୁ ମୋର ଶ୍ରବଣୀ ସହିତ ଆତ୍ମୀୟତାକୁ ପରୀକ୍ଷା କରିବାକୁ କି କଅଣ କେଜାଣି ସେ ମୋତେ କେତେଥର କହିଛନ୍ତି ଯେ ତୁମେ ଯଦି ନାରୀମାନଙ୍କ ବିଷୟରେ ଏତେ ଲେଖି ପାରୁଚ ତେବେ ଶ୍ରାବଣୀ କଥା ଲେଖୁନ କାହିଁକି ?

ମୁଁ ଭାବିଲି ପ୍ରେମ ମାନସିକତାର ପ୍ରତିଫଳନ ସାହିତ୍ୟରେ ହେବା ଅସତ୍ୟ ନୁହେଁ । କିନ୍ତୁ ଏଇଠି ମୁଁ ଅଡୁଆରେ ପଡିଯାଏଁ । ଜଣେ ଲେଖକ ହେଲା ବୋଲି ଯେ ସବୁ ସତ କଥା

ଲେଖି ପକାଇବ ତାର କିଛି ମାନେ ନାହିଁ । ଲେଖିବାକି ଉଚିତ ନୁହେଁ । ସବୁ ସତ ସତନୁହେଁ ଯଦି ତାକୁ ସମାଜ ସ୍ୱୀକୃତି ଦେଇ ନଥାଏ । ହାଟ ମଝିରେ ଢେଙ୍କୁରାପିଟି କହିଲେ ମଧ ସେଠି ସତଟା ସତ ହୁଏ ନାହିଁ ।

ଆଉ ଗୋଟିଏ ପ୍ରକାରର ସତ ଅଛି । ସେଇଟା ସକାଳର ସ୍ଥଳ ପଦ୍ମ ପରି । ଅତି ସୁନ୍ଦର ଓ ମନୋରମ । କିନ୍ତୁ ସୂର୍ଯ୍ୟାଲୋକରସ୍ପର୍ଶ ପାଇଲା ମାତ୍ରେ ରଂଗ ବଦଳେଇ ଦିଏ । ଯାହା ଥାଏ ରାତିରେ, ଅଜ୍ଞାତରେ, ତାହା ବଦଳି ଯାଏ ଦିନରେ ।

ସତଟା ଯଦି ରୂପ ବଦଳେଇ ପାରେ ତେବେ ତାହା ବୁମେରାଂଗ ହେଇ ଫେରିଆସେ । ଅନେକ ଅସୁବିଧା ଓ ଅଡୁଆ ସୃଷ୍ଟି କରେ ।

ମୁଁ ଜଣେ ସାଧାରଣ ଲେଖକ । ଏତେ ଅଡୁଆ କଥାକୁ ମନ ଭିତରକୁ ନେଇ ଘାଣ୍ଟି ଚକଟି ହେବାକୁ ଚାହୁଁ ନାହିଁ । ଆଚ୍ଛା, ଯଦି ବା କୌଣସି ଗୋଟିଏ ଅସତର୍କ ମୁହୂର୍ତ୍ତରେ କିଛି ଗୋଟାଏ ଘଟି ଯାଇଚି ତାକୁ ନେଇ ଆଉ ଲେଖା ଲେଖି କଅଣ ଦରକାର ?

ମୋ ସ୍ତ୍ରୀ କିନ୍ତୁ ମୋର ସେ ଦୁଃଖ ବୁଝିଲେନି । କାରଣ ସେ ଜାଣନ୍ତି ଲେଖକ ମାନେ ହିଁ ସତ କହି ପାରନ୍ତି । କଥାରେ ନହେଲେ ମଧ ଲେଖାରେ ଥାଏ । ସେ ସେଇ ସେତକ ଜାଣିବାକୁ ମୋତେ ଖୁଣ୍ଟା ଦେବାକୁ ଲାଗିଲେ । ସିଧା ସଳଖ ସେ ମୋତେ କେବେ କିଛି କହି ନାହାନ୍ତି ସେ ବିଷୟରେ । କିନ୍ତୁ ସେଇ ନକହି ପାରିବାକୁ ଆମର ପାରିବାରିକ ପରିବେଶକୁ କେବେ ବି ବିଘ୍ନିତ କରିନାହିଁ । ମୁଁ ବରଂ ସେ ସେଥିପାଇଁ ବଡ ଉଦାର ବୋଲି କହିବି । ମୋ ସ୍ତ୍ରୀ ଭଲ ଭାବେ ଜାଣନ୍ତି ଏବଂ ବେଳେ ବେଳେ କହନ୍ତି ମଧ, ତୁମେତ ଆଉ ଆମେରିକା କି ଅଷ୍ଟ୍ରେଲିଆର ରାଷ୍ଟ୍ରପତି କି ଉପରାଷ୍ଟ୍ରପତି ହେଇନ ଯେ ପରକୀୟା ପ୍ରିତିଟାକୁ ମଧ ଗଣ ମାଧମରେ ଘୋଷଣା କରିଦେବ । ଭାରତୀୟ ଜଳବାୟୁରେ ଏଇଟା ସମ୍ଭବ ନୁହେଁ । ଭଗବାନ ଶ୍ରୀ କୃଷ୍ଣ ମଧ କରି ନଥିଲେ ? ଆମର ସେଇ ସଂସ୍କୃତି ।

ମୁଁ ଏବେ କହୁଚି । ଘଟଣାଟା ଘଟିଥିଲା ଗୋଟାଏ ମନୋରମ ତଥା ମୁଲାଏମ୍ ଶୁକ୍ଳପକ୍ଷ ଦ୍ୱାଦଶୀ ତିଥିର ବସନ୍ତ ରାତିର ଶେଷ ପ୍ରହରରେ । ଦିଲ୍ଲୀ ଭୁବନେଶ୍ୱର ରାଜଧାନୀ ଏକ୍ସପ୍ରେସ୍‌ରେ ସେଇଟା ଥିଲା ଇନାଗୁରାଲ୍ ବା ଯାତ୍ରାରମ୍ଭର ଦିନ । ତାର ଗୋଟାଏ ଏ. ସି. ଟୁ ଟାୟାର ବଗିରେ ମୁଁ ଥିଲି ପ୍ରଥମ ଭୁବନେଶ୍ୱର ଯାତ୍ରୀ । ଅର୍ଥାତ୍ ତାଲିକାର ପ୍ରଥମ ନାଁ ଥିଲା ଶତାବ୍ଦୀ ମହାପାତ୍ର । ଇନଗୁରାଲ୍ ଫଙ୍କସନର କିଛି ଅଂଶ ମଧ ମୁଁ ଦେଖିଛି । ବେଶ ସୁସଜ୍ଜିତ ମଣ୍ଡପ ଉପରୁ ରେଳ ମନ୍ତ୍ରୀଙ୍କ ଭାଷଣର କିଛି ଅଂଶ ମଧ ଶୁଣିଚି । ଚଳିତ ଶତାବ୍ଦୀରେ ଭାରତର ରେଳମନ୍ତ୍ରୀମାନେ ଯେ ଗୋଟାଏ ଗୋଟାଏ ନୂତନ ସ୍ୱପ୍ନ ଓ ସମ୍ଭାବନାରେ ଭାବ ବିଭୋର ରହିବେ ଏଥିରେ ସନ୍ଦେହ ନାହିଁ ।

ମୁଁ କମ୍ପାଟମେଣ୍ଟ ପାଖକୁ ଗଲା ବେଳକୁ ସୁନ୍ଦର ପୋଷାକ ପରିହିତ ଜଣେ ସୁଦର୍ଶନ ରେଳ କର୍ମଚାରୀ ମୋତେ ପୁଷ୍ପ ଗୁଚ୍ଛଟିଏ ଦେଇ ସ୍ୱାଗତ ଜଣେଇଲେ ଏବଂ ତାଙ୍କ ପାଖରେ ଠିଆ ହେଇଥିବା ଦୁଇଜଣ ଅତ୍ୟନ୍ତ ସୁନ୍ଦରୀ ଯୁବତୀ ମୋ ଦେହରେ ଗୋଲାପ ଜଳ ଓ ଚନ୍ଦନ

ଛିନ୍ତୁ ମୋତେ ସ୍ୱାଗତ କଲେ । ଗାଡ଼ିର ସାଜସଜ୍ଜା ବର୍ଣ୍ଣନାତୀତ । ମନେ ହେଲା ଯେମିତି ଏହା ଇନ୍ଦ୍ରପୁରୀର ଟ୍ରେନ୍ ଏବଂ ଏଥିରେ କେବଳ ସ୍ୱର୍ଗାଧିପତି ଏବଂ ତାଙ୍କ ନର୍ତ୍ତକୀଗଣ ଯାତାୟାତ କରୁଥିବେ । ବଗି ଭିତରେ ଅନେକ ଗୁଡ଼ିଏ ଫୁଲକୁଣ୍ଡ । ମୁଁ ବିମୋହିତ ଓ ବିମୁଗ୍ଧ ହୋଇ ପଡୁଥିଲି । ଜିନିଷ ପତ୍ର ଯଥା ସ୍ଥାନରେ ରଖି ମୁଁ ଆରାମରେ ବସି ପଡ଼ିଲି । ବୁଝିଗଲି ଏ ଯାତ୍ରା ନିଶ୍ଚିନ୍ତ ଆନନ୍ଦ ଦାୟକ ହେବ ।

ଆସ୍ତେ ଆସ୍ତେ କମ୍ପାର୍ଟମେଣ୍ଟ ଭିତରେ ଲୋକ ଭର୍ତ୍ତି ହୋଇଗଲେ । ମନ୍ତ୍ରୀ ମହୋଦୟ ନୀଳ ପତାକା ଦେଖେଇ ଟ୍ରେନ ଓ ଟ୍ରେନର ଯାତ୍ରୀ ମାନଙ୍କୁ ବିଦାୟ ସମ୍ବର୍ଦ୍ଧନା ଜଣେଇଲେ । ଏଇଟା ହେଉଚି ଏମିତି ଏକ ବିଦାୟ ମୁହୂର୍ତ୍ତ ଯେତେବେଳେ ସମସ୍ତେ ହସୁ ଥାଆନ୍ତି । ବିଦାୟ ଦେବା ଲୋକ ଓ ବିଦାୟ ନେବା ଲୋକ ଉଭୟ ।

ଗାଡ଼ି ଚାଲିଲା ପରେ ଏ. ସି. କମ୍ପାର୍ଟମେଣ୍ଟ ଭିତରୁ ମୁଁ ଆଉ ଦ୍ୱାଦଶୀ ଚନ୍ଦ୍ରର ବକ୍ର ଚାହାଣି ଦେଖି ପାରୁ ନଥିବାରୁ ଦୁଃଖ ଲାଗୁଥିଲା । ସେ ଦିନ ଯାକ ମୁଁ ଏତେ କାମ କରିଥିଲି ଯେ ବଡ କ୍ଳାନ୍ତ ହୋଇ ପଡ଼ିଥିଲି । ସଂଧ୍ୟା ଆଠଟା ବେଳକୁ ମୁଁ ଖାଇ ପିଇ ଶୋଇ ପଡ଼ିଲି । କେଉଁ ଗୋଟାଏ ମଧୁର ଆମେଜ ସୃଷ୍ଟି କରୁଥିବା ଗଜଲର ସ୍ୱର ସେତେବେଳେ ମୋତେ ଆଉ ଡିଷ୍ଟର୍ବ କରି ପାରୁ ନଥିଲା ।

ରାତି ସେତେବେଳକୁ କେତେ ହେଲାଣି କେଜାଣି । କେଉଁ ଷ୍ଟେସନ ଆସିଲାଣି ବା ଆସୁଚି ସେ କଥା ମଧ ମୋତେ ଜଣା ନଥାଏ । ହଠାତ୍ ମୋ ନିଦ ଭାଙ୍ଗିଗଲା ।

ମୋ ସାମନାରେ ଜଣେ ମହିଳା । ନୀଳ ଆଲୁଅରେ ତାଙ୍କୁ ଦେଖିବାରେ ମୋର ମୋଟେ ଅସୁବିଧା ହେଉନଥିଲା । ମନେ ହେଲା ବେଶ୍ ଲମ୍ବା, ଗୋରା, ପତଳା ମାନେ 'ପେନ୍‌ସିଲ ଷ୍ଟେଟ୍' ବୋଲି କହି ହେବ । ମୁଁ ତଳ ବର୍ଥରେ ଚିତ୍ ହୋଇ ଝରକା ଆଡକୁ ମୁହଁ ରଖି ଶୋଇଥିଲି । ସେ ମୋ ମୁଣ୍ଡ ପାଖରୁ ଅଳ୍ପ ଦୂରରେ ଠିଆ ହେଇଛନ୍ତି । ମୁଣ୍ଡର ବାଳ ସାମ୍ପୁଦିଆ ଅଥଚ ବେକ ଯାଏ ଝୁଲୁଛି । ହୁଏତ ବ୍ୟସ୍ତତା ଭିତରେ ସେ ତାର ଯତ୍ନ ନେଇ ପାରି ନାହାନ୍ତି । ବ୍ୟସ୍ତତା ଓ ବିସନ୍ନତା ମୁହଁରେ ଫୁଟି ଉଠୁଥାଏ ।

ମୁଁ ହିନ୍ଦୀରେ ପଚାରିଲି କଅଣ ହେଲା ମେଡମ ? ଆପଣଙ୍କ ବାର୍ଥ ନମ୍ବର ? ମୁଁ ଛାତିରୁ କମ୍ବଳ କାଢି ଉଠି ପଡ଼ିଲି ।

ସାଧାରଣତଃ ମହିଳା, ବିଶେଷ କରି ଏ ପ୍ରକାର ମହିଳା ଙ୍କୁ ଜଣେ ସାହାଯ୍ୟର ହାତ ବଢେଇବାକୁ, ଆବଶ୍ୟକ ଥାଉ କି ନଥାଉ, ଆଗେଇ ଆସେ । ମୁଁ କିଛି ନୂଆ କାମ କରି ନଥିଲି । ସେ ଏକ ପ୍ରକାର କାନ୍ଦ କାନ୍ଦ ହୋଇ କହିଲେ, ଦେଖନ୍ତୁ ମୋର ଭାଗ୍ୟ କେତେ ଖରାପ । ମୁଁ ଯିବି କଲିକତା । ମୋତେ ମୋର ବର୍ଥ ମିଳିଚି । ତାକୁ ମାଡି ବସିଛନ୍ତି ଜଣେ ବିଶାଳକାୟ ଦୁର୍ଦ୍ଦାନ୍ତ ରାଜନେତା, ମାନେ ତାଙ୍କ ମୁହଁ ଓ ନିଶରୁ ଯାହା ଜଣାପଡୁଛି । ଟି ଟି ଇ କହୁଛନ୍ତି ମୁଁ ତାଙ୍କୁ ମୋଟେ ଉଠେଇ ପାରିବିନି । ପୋଲିସ୍ ବି ପାରିବନି । ସତରେ ରାଜନେତାଙ୍କ ବା ଉଠେଇବ କିଏ ?

ମୁଁ ବ୍ୟସ୍ତ ହୋଇ ପଡିଲି । ମୁଁ ଭାବିଲି ଆମ ଭାରତଟା ଆଉ କାହା ପାଇଁ ସ୍ୱାଧୀନତା ଆଣିଥାଉ କି ନଥାଉ ଏମାନଙ୍କ ପାଇଁ ପ୍ରକୃତ ସ୍ୱାଧୀନତା ଆଣି ଦେଇଛି । ମୁଁ ଦୁଃଖ ପ୍ରକାଶ କଲି ଓ ତାଙ୍କୁ ପାଖରେ ବସିବାକୁ କହିଲି । ସେ ତାଙ୍କ ଛୋଟ ବ୍ୟାଗଟିକୁ ସେଲଫ୍ ଉପରେ ଥିବା ମୋର ପତ୍ର ପତ୍ରିକା ଗୁଡିକୁ ଘୁଞ୍ଚେଇ ଦେଇ ଥୋଇ ଦେଲେ ଏବଂ ଅତି ଆପଣାର ଲୋକ ପରି ସାମାନ୍ୟ ବ୍ୟବଧାନ ରଖି ମୋ ପାଖରେ ବସି ପଡିଲେ । ମୁଁ ସଂପୂର୍ଣ୍ଣ ଅପରିଚିତାଙ୍କ ଠାରୁ ଏପରି ଅନ୍ତରଙ୍ଗତା ଆଶା କରୁ ନଥିଲେ ମଧ ମନେ୍ ମନେ ଏହା ତାଙ୍କର ଅନାବିଳ ସରଳତା ଭାବି କୌଣସି ପ୍ରତିକ୍ରିୟା ପ୍ରକାଶ ନକରି ବରଂ ତାଙ୍କୁ ସ୍ୱାଗତ କଲି ।

ତାଙ୍କ ଶାଢି ଓ ଅନ୍ୟାନ୍ୟ ପୋଷାକ ପରିଚ୍ଛଦରୁ ତାଙ୍କ ରୁଚି ମାର୍ଜିତ ଓ ଆଭିଜାତ୍ୟପୂର୍ଣ୍ଣ ମନେ ହେଉଥିଲା । କଥାବାର୍ତ୍ତା ମଧ ସୁସଂଯତ । ଶରୀର ସୁଗଠିତ ଓ ମୁହଁଟା ବଡ ଚାର୍ମି । ସେ ମୁଣ୍ଡଟାକୁ ଥରେ ଏପାଖ ଓ ଥରେ ସେ ପାଖ କରି ବାଳ କେରାକୁ ସଜାଡି ନେଲେ ଏବଂ ସିଧା ହୋଇ ବସିଲେ । ସେତେବେଳେ ତାଙ୍କ ଅନାବୃତ ଅଣ୍ଟା ଓ ପେଟରୁ ଦେଖିଲି କୋଉଠି ଚିମୁଟାଏ ମଧ ଅଧିକ ମାଂସ ଲାଗି ନାହିଁ ।

କଅଣ ହେଇଚି ମୋତେ ଟିକିଏ କହିଲେ । ମୁଁ କଥା ଅରମ୍ଭ କଲି । ଗୋଟାଏ ସଂବେଦନ ସ୍ୱରରେ । ମୁଁ କିପରି ଆପଣଙ୍କୁ ସାହାଯ୍ୟ କରି ପାରିବି ?

ସେ ଆମୂଳଚୁଳ ତାଙ୍କ ଅସୁବିଧା କଥା କହିଗଲେ । ସେ ଯେ ଗୋଟିଏ ଅନ୍ୟାୟର ଶିକାର ହେଉଛନ୍ତି ଏ କଥା ମଧ କହିଲେ । ସେ ଟିକିଏ ଦମ୍ ନେଲେ ଓ କହିଲେ ଏଇଟା ୟୁପି । ୟା ପରେ ଆସିବ ବିହାର । ଏ ଦୁଇ ରାଜ୍ୟର ପ୍ରକୃତ ମାଲିକ ହେଲେ କ୍ଷମତାଧରରାଜନେତା ଓ ମାଫିଆ ମାନେ । କୁହାଯାଏ ସୂର୍ଯ୍ୟ ଚନ୍ଦ୍ର ଏମାନଙ୍କ ନିର୍ଦ୍ଦେଶରେ ଯାତାୟାତ କରନ୍ତି ।

ସେ ଟିକିଏ ନିରବ ରହିଲେ ତା ପରେ କହିଲେ ଆପଣ କଣ୍ଡକ୍ଟରଙ୍କୁ ମୋ ପାଇଁ କିଛି କହି ପାରିବେ ବୋଲି ଭାବୁଛନ୍ତି ? ଅସମ୍ଭବ, କିଛି ଲାଭ ହେବନି । ବରଂ ପୋଲିସ୍ ଜାଣିଲେ କଥା ଓଲଟା ହେଇପାରେ ।

ଆମେ ଦୁଇଜଣ କଥା ହେଉଥିଲା ବେଳେ ଯଥା ସମ୍ଭବ ଧୀର ଗଳାରେ କଥା ହେଉଥିଲୁଁ । ଏତେ ରାତିରେ ଅନ୍ୟ ମାନଙ୍କର ଶୋଇବାରେ ଯେମିତି ଅସୁବିଧା ନ ହୁଏ । ତା ଛଡା ଆମ କଟୁ ମନ୍ତବ୍ୟ ପ୍ରତି ମଧ ଆମେ ସାବଧାନ ହେଉଥିଲୁଁ । ତେଣୁ କଥାଟା ଯଥା ସମ୍ଭବ ଅନୁଚ୍ଚ ସ୍ୱରରେ କହୁଥିଲା ବେଳେ ଆମେ ଦୁହେଁ ଜାଣିକରି ହେଉ ବା ଅଜାଣତରେ ହେଉ କିଛିଟା ପରସ୍ପର ଆଡକୁ ଢଳି ଆସୁଥିଲୁଁ ।

ସେତେବେଳେ ମୋର ମନେ ହେଉଥିଲା ସେ ପୁରାପୁରି ସ୍ଥାନୀୟ ହିନ୍ଦୀରେ କଥା ହେଉଥିଲେ ଏବଂ ତାଙ୍କରଏ ଅଂଚଳ ଉପରେ ଯଥେଷ୍ଟ ଜ୍ଞାନ ଥିଲା ।

ଆସ୍ତେ ଆସ୍ତେ ଆମେ ପରିଚୟ ଆଡକୁ ଆସିଲୁ । ସେତେବେଳେ ସେ ମୋତେ ହଠାତ୍ କହିଲେ ଆପଣତ ଶତାବ୍ଦୀ ମହାପାତ୍ର, ଯିବେ ଭୁବନେଶ୍ୱର । ଠିକ୍ ? ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ସେ ସାମାନ୍ୟ ହସି ଦେଲେ । ତାଙ୍କର ସେ ମୋଟା ଓଠ ଫାଙ୍କରୁ ହସ ଟିକକ ଝରି ଆସୁଥିଲା ବେଳେ ଯେ କୌଣସି ଲୋକ ବୁଝି ପାରିବ ଯେ ସେଥିରେ ଅନେକ ମାଦକତା ଅଛି ।

ତିରିଶଟି ବସନ୍ତ ଅତିକ୍ରମ କରିଥିବା ଶତାବ୍ଦୀ ମହାପାତ୍ରଙ୍କ ଭିତରେ ଏ ଅହେତୁକ ଅବସ୍ଥା ଯେ ସହଜରେ ଚମକ ସୃଷ୍ଟି କରିବ ଏଥିରେ ସନ୍ଦେହ ନଥିଲା । କିନ୍ତୁ ସେ ନିଜକୁ ଆୟତ୍ତ ଭିତରେ ରଖିଲେ ।

ମୁଁ ଶ୍ରାବଣୀ ରାୟ । ବନାରସ ହିନ୍ଦୁ ଇଉନିଭରସିଟିର ଇତିହାସ ବିଭାଗ ଅଧାପିକା । ଯିବି କଲିକତା । କଲିକତାର ଗୋଟେ ସେମିନାରରେ ମୋର ଯୋଗ ଦେବାର ଅଛି । ହଠାତ୍ ଆସିବାକୁ ପଡୁଥିବାରୁ ଏ ଅସୁବିଧା । ସେ ଏକା ନିଃଶ୍ୱାସରେ କହିଗଲେ ।

ମୁଁ ଖୁସି ହୋଇଗଲି । ଇତିହାସ ପ୍ରତି ମୋର ଯଥେଷ୍ଟ ଶ୍ରଦ୍ଧା ଅଛି । ମୁଁ ଅହମଦାବାଦ ଆଇ. ଆଇ. ଏମ. ର ଛାତ୍ର । ଏବେ ଗୋଟିଏ MNC ରେ ଅଛି । ସେ ପୁଣି ହସିଲେ ଓଠକୁ ସାମାନ୍ୟ ଦାନ୍ତରେ ଚାପି । ତା ପରେ କହିଲେ ମେନେଜମେଣ୍ଟଟା ମୋ ପାଇଁ ଗୋଟାଏ ଡ୍ରାଇ ସବଜେକ୍ଟ । କିଛି ମନେ କରନ୍ତୁନି ।

ଏଥିରେ କିଛି ମନେକରିବାର ଥିଲେ ମଧ ଏଇଟା ତାଙ୍କର ଗଭୀର ଆନ୍ତରିକତା ବୋଲି ମନେ ହେଲା । ନାରୀ ପାଖରେ ପୁରୁଷର ପରାଜୟଟା ପରାଜୟ ନୁହେଁ । ମୁଁ ଭାବିଲି ବଂଧୁତାଟା ଯେତେବେଳେ ଜମି ଜମି ଆସୁଛି ସେତେବେଳେ ଖୋଲାମନରୁ ଛିଟିକି ପଡିଥିବା କେଇଟା ଶବ୍ଦକୁ ଅବଜ୍ଞା କରାଯାଇପାରେ ।

ଆମର ଗପ ଯେତିକି ଲମ୍ବିଯାଉଥାଏ ରାତ୍ରୀର ଶେଷ ପ୍ରହର ମଧ ସେତିକି ପ୍ରସାରିତ ହୋଇ ଯାଉଥାଏ । ମୁଁ ମନେ ମନେ ଭାବୁଥିଲିଏ ରାତିଟା ଆହୁରି ଲମ୍ବିଯାଆନ୍ତା କି । ସକାଳ ଆସିବାକୁ ଆହୁରି ଡେରି କରନ୍ତା କି । ଏବଂ ସର୍ବୋପରି କଲିକତାଟା ଆହୁରି ଅନେକ ଦୂରକୁ ଘୁଞ୍ଚିଯାଆନ୍ତା କି ।

ହଠାତ୍ ସେ ମୋତେ କହିଲେ, ଆରେ ଗୋଟାଏ ବାଜିଲାଣି ଯେ । ଆପଣ ଶୋଇବେନି ?ପରଦା ଟାଣି ଦଉଚି । ଆପଣଙ୍କୁ ଅନେକ କଷ୍ଟ ଦେଲି ନା ?

ମଝି ରାତିରେ ଆଉ ନ ଶୋଇବାର ଦୁଃଖ ମୋର ମୋଟେ ନ ଥିଲା । ବରଂ ସେ ତାଙ୍କବର୍ଥରୁ ଅନ୍ୟାୟ ଭାବେ ବିତାଡିତ ହୋଇ ଥିବାରୁ ମୋର ସମସ୍ତ ଶ୍ରଦ୍ଧା ତାଙ୍କ ଉପରେ ଅଜାଡ଼ି ହୋଇ ପଡୁଥିଲା । ମୁଁ ତାଙ୍କୁ ପ୍ରସ୍ତାବ ଦେଲି ଆପଣତ କଲିକତା ଯାଏ ଯିବେ । ତା ପରେ କନଫରେନ୍ସ ଓ ପେପର ପଢିବାର ଅଛି । କାମ ଅନେକ । ତା' ପୂର୍ବରୁ ବିଶ୍ରାମ ନିହାତି ଦରକାର । ଆପଣ ବରଂ ଏମିତି କରନ୍ତୁ, ଏଇଠି ଟିକେ ଶୋଇ ପଡନ୍ତୁ । ସମଗ୍ର ରାତିଟାରେ

ଦୁଇ ତିନି ଘଣ୍ଟା ବିଶ୍ରାମ ନେଲେ ଯଥେଷ୍ଟ । ମୁଁ ତ କହିବାକୁଗଲେ ବେଶ କିଛି ସମୟ ଶୋଇ ସାରିଲିଣି । ମୋ ପାଇଁ ସେତକ ଯଥେଷ୍ଟ । ତା ଛଡା ଆପଣ ଓହ୍ଲେଇ ଗଲା ପରେ ମୁଁ ପୁଣି ଶୋଇ ପାରିବି କିମ୍ବା ଯା ଭିତରେ ଯଦି ଆପଣଙ୍କ ବାର୍ଥ ଖାଲି ହେଇ ଯାଏ.... ।

ସେ ହସିଲେ । କହିଲେ ବଦାନ୍ୟତା ପାଇଁ କୃତଜ୍ଞତାର ଭାଷା ନାହିଁ । କିନ୍ତୁ ମୁଁ ଏତେଟା ସ୍ୱାର୍ଥପର ହେଇ ପାରବିନି । ଆପଣ ମୋତେ ଟିକିଏ ବସିବାକୁ ଜାଗା ଦେଲେ । ସେତକ ଯଥେଷ୍ଟ । ଟିକିଏ ରହି ସେପୁଣି କହିଲେ ମୁଁ ଶୋଇଲେ ଆପଣ କଅଣ କରିବେ ?

ମୋ ନିଦ ସମୟ ଚାଲି ଗଲାଣି । ମୁଁ ବରଂ ଏଇ ବେଡ ହେଡ ଲାଇଟଟା ଜଳେଇ ପଢା ପଢି କରୁଚି । ଆପଣ ସେ ଆଡକୁ ଟିକିଏ ମୁହଁ କରି ଶୋଇ ପଡନ୍ତୁ । ମୋ ବିଛଣାତ ଅଛି । ତକିଆ ଓ କମ୍ବଳ ମଧ ନିଅନ୍ତୁ ।

ଆପଣଙ୍କ ଆଡ଼କୁ ଗୋଡ଼ କରି ? କଅଣ କହୁଚନ୍ତି ? ବରଂ ଆପଣ ଯେଇଠି ବସନ୍ତୁ । ମୁଁ ଆପଣଙ୍କ ଆଡ଼କୁ ମୁଣ୍ଡ କରି ଟିକେ ଗଡ଼ିପଡୁଚି । ଗୟା ପାଖରେ ବୋଧେ ରାତି ପାହିଯିବ । ମୋତେ ଉଠେଇ ଦେବେ ।

ମୁଁ ରାଜି ହେଇଗଲି । ସେ ମୋ ଜଙ୍ଘ ପାଖକୁ ଲାଗି ତକିଆ ରଖି ଶୋଇ ପଡିଲେ । ମୋ କମ୍ବଳ ମଧ ଘୋଡି ହେଇ ପଡିଲେ । ଆଉ ମୁଁ ପତ୍ରିକା ଖଣ୍ଡେ ନେଇ ପଢିବାକୁ ଲାଗିଲି । ପରଦା ସେ ଟାଣି ଦେଇଥିଲେ ଆଗରୁ । ତା'ରି ଅନ୍ତରାଳରେ ଝାପସା ନୀଳ ଆଲୁଅରେ ସାୱାର ବାଥ୍ ଭିତରେ ସେ ଓ ମୁଁ ।

ସେ ବୋଧେ ଖୁବ୍ ଶୀଘ୍ର ଶୋଇପଡିଲେ । ମୁଁ ଦେଖିଲି ବେଳେ ବେଳେ ତାଙ୍କ ମୁଣ୍ଡରେ ସାମ୍ପୁ ବାଳ ଉଡିଆସି ମୋ ଜଙ୍ଘରେପଡୁଥାଏ । ମୋତେ ଟିକିଏ ଅଡୁଆ ଲାଗିଲେ ମୁଁ ବାଳ କେରାକ ଆସ୍ତେ କରି ଦୁଇଟା ଆଙ୍ଗୁଳିରେ ଆଡେଇ ତକିଆ ଉପରେ ଥୋଇ ଦିଏଁ । ନିଦ ବାଉଳାରେ ଏଥର ବୋଧେ ତାଙ୍କ ବାଁ ହାତ ଟା ଆସି ମୋ ଜଙ୍ଘ ଉପରେ ପଡ଼ିଲା ।

ମୁଁ ଚମକି ପଡ଼ିଲି । ଚମ୍ପା କଢ଼ର ଆଙ୍ଗୁଳିଗୁଡ଼ିକ ମୋ ଜଂଘ ଉପରେ ଇତସ୍ତତଃ ଘୁରି ବୁଲୁଥିଲେ ।

ବସ୍ କିମ୍ବା ଟ୍ରେନ୍ ଭିତରେ ଏମିତିକା ଅଭିଜ୍ଞତା ପ୍ରାୟ ସମସ୍ତଙ୍କରଥିବ । ଏ ସବୁ ଅସ୍ୱାଭାବିକ ବୋଲି କହି ହେବ ନାହିଁ । ବେଳେ ବେଳେ ଛଳନା ମଧ ଥାଏ । ଏ କ୍ଷେତ୍ରରେ ଛଳନା ଓ ବାସ୍ତବତାର ଛଳନା ଭିତରେ ପାର୍ଥକ୍ୟ ପ୍ରାୟ ନଥାଏ । କିନ୍ତୁ ଜଣେ ଭଦ୍ର ମହିଳା ଯେ ଜାଣି ଶୁଣି ଏମିତି କରୁଥିବେ ଏ ପ୍ରକାର ଗୋଟିଏ ସହଜ ସିଦ୍ଧାନ୍ତରେ ମୁଁ ପହଞ୍ଚି ପାରୁ ନଥଲି, ଯଦିଓ କଥାଟା ମୋତେ ଅସମ୍ଭବ ନୁହେଁ । ନାରୀ ମାନେ ବିତ ମଣିଷ ଏବଂ ସେମାନଙ୍କ ଭିତରେ ଆସକ୍ତି ଥିବ । ସେମାନେ କାମନା ରହିତ ହେଇ ନପାରନ୍ତି ।

ଆସ୍ତେ ଆସ୍ତେ ମୋ ଭିତରେ ଗୋଟାଏ ଯନ୍ତ୍ରଣାର ତରଙ୍ଗ ସୃଷ୍ଟି ହେଲା । ମୋ ଭିତରର ଶିରା ପ୍ରଶିରା ଗୁଡ଼ିକ ଯେମିତି ଅସହ୍ୟ ଚାପର ସମ୍ମୁଖୀନ ହେଉଥିଲେ । ସେଥିରୁ ମୁକ୍ତି ପାଇବା ପାଇଁ ମୁଁ ଧୀରେ ଧୀରେ ତାଙ୍କ ପାପୁଲିଟିକୁ ମୋ ଡାହାଣ ହାତରେ ଧରି ଉଠେଇ ଦେବି ବୋଲି ଭାବିଲି । ପୁଣି ଭାବିଲି ଯଦି ତାଙ୍କ ନିଦ ଭାଙ୍ଗିଯାଏ ? ସେ କଅଣ ଭାବିବେ ?

ସାମାନ୍ୟ ସହନ ଶକ୍ତି ମୋର ନାହିଁ ବୋଲି ଭାବିବେନି ? ନିଦରେ ତାଙ୍କ ଗୋଡ ଉପରେ ମୋ ହାତଟା ପଡିଗଲେ ଏମିତି କଅଣ ହେଇଗଲା ? ମୁଁ ସିନା ସେତକ କଲି ନାହିଁ । କିନ୍ତୁ ଦେଖିଲି ମୁଁ ଆସ୍ତେ ଆସ୍ତେ ଅନେକ ସନ୍ତୁଳନର ଜାଲରେ ଛନ୍ଦି ହେଇ ଯାଉଚି । ମୁଁ ନା ସେହାତର ବହୁ ଆନନ୍ଦ ଦାୟକ ଯନ୍ତ୍ରଣାରୁ ମୁକ୍ତି ପାଇପାରୁଚି ନା ସେ ହାତକୁ ଉଠେଇ ଦେଇ ପାରୁଚି ।

ଗାଡି ସେମିତି ଚାଲିଥାଏ ।

ଯା ଭିତରେ ମୁଁ ତାଙ୍କୁ ଥରେ ଦି'ଥର ସଂଯମତାର ସହିତ ଶୋଇବା ପାଇଁ ସାହାଯ୍ୟ କରିସାରିଲିଣି । ସେ ମଧ ଅନୁଗତ ପରି ମୋର ଅନୁଶାସନକୁ ମାନି ନେଇଛନ୍ତି । ବେଳେ ବେଳେ ଆଖି ଖୋଲି ଦେଖିଛନ୍ତି ଏବଂ ମୋର ମନେ ହେଲା, ସେତେବେଳେ ସେ କୃତଜ୍ଞତାର ଦୃଷ୍ଟି ଦେଇ ପୁଣି ପରମ ଆହ୍ଲାଦରେ କଡ ଲେଉଟାଇ ଶୋଉଛନ୍ତି ।

ଗୋଟିଏ ଅନିର୍ବଚନୀୟ ମୁହୂର୍ତ୍ତର ଅନୁଭବକୁ ମୁଁ ସେତେବେଳେ ପ୍ରାଣଭରି ଉପଭୋଗ କରିବାକୁ ଚାହୁଁଥିଲି । ଭାବୁଥିଲି ସେ ସତରେ ଶୋଇ ନଥାନ୍ତେ କି ?

ମୋ ବର୍ଥ ପଛପଟୁ କିଛି ଯାତ୍ରୀ ବୋଧେ ଉଠିଲେ । ସେମାନେ ହୁଏତ ଆଗ ଷ୍ଟେସନରେ ଓହ୍ଲେଇବେ । ମୁଁ ଘଡି ଦେଖିଲି । ପାଞ୍ଚଟା ବାଜିବାକୁ ଆଉ ପନ୍ଦର ମିନିଟ ବାକି ଅଛି ।ଆରେ ଏତେ ଶୀଘ୍ର ଗୟା ଆସିଗଲା ।

ମୁଁ ତାଙ୍କ ମୁହଁକୁ ଦେଖିଲି । ଆଖି ଦୁଇଟା ପରମଆତ୍ମ ସନ୍ତୋଷରେ ମୁଦି ହୋଇ ଯାଇଚି । କି ସୁନ୍ଦର ମୁହଁଟା ସତେ ? ନା, ସେ ଆହୁରି ଶୁଅନ୍ତୁ । ଗୟା ପରେ, କିମ୍ବା ଯେତେ ସମୟ ଇଚ୍ଛା ସେ ଶୁଅନ୍ତୁ, କଅଣ କ୍ଷତି ହେଇ ଯାଉଚି ।

ଗୟା ଆସିଗଲା । କିଛି ଲୋକ ଓହ୍ଲେଇଲେ । କେହି ଜଣେ ଭି. ଆଇ. ପି. ବୋଧେ ଆମ କମ୍ପାଟମେଣ୍ଟକୁ ଉଠିଲେ । ଖଦଡ଼ଧୋତୀ ଓ ପଞ୍ଜାବୀ । ମୁଣ୍ଡରେ ଗାନ୍ଧୀ ଟୋପି । ବିଶିଷ୍ଟ ରାଜନେତା । ବିହାର ୟୁପି ଭଳି କେତେକ ସ୍ଥାନରେ ଏମାନଙ୍କୁ ଆର୍ମଡ଼ ଗାର୍ଡ ସିକ୍ୟୁରିଟି ଦିଆଯାଏ । ଭି. ଆଇ. ପି.ଙ୍କ ଆଗ ପଛରେ ବେଶ୍ କିଛି ପୋଲିସ୍ ଗାର୍ଡ । ଆଉ କିଛି ସିଧା ପୋଷାକ ଧାରୀ ହେବେ ବୋଧେ, ଖାଲି ଆଗପଛ ତରଖି ତରଖି ଦେଖୁ ଥାଆନ୍ତି । ସେମାନେ ସମସ୍ତେ ମୋ ବର୍ଥର ଆଗକୁ ଯାଇ ଖାଲି ଜାଗା ଦଖଲ କରିନେଲେ ।

ଏ ଅଂଚଳରେ ଏ ସବୁ ଅତିସାଧାରଣ କଥା । ସେମାନେ ଗାଡିକୁ ଉଠନ୍ତି, ସେଠି ତାଙ୍କ ପାଇଁ ବର୍ଥ ଖାଲି ଥାଉବା ନଥାଉ । ସେମାନେ ମଧ ଗାଡିରୁ ଓହ୍ଲାନ୍ତି ସେଠି ଷ୍ଟେସନ ଥାଉ କି ନଥାଉ ।

ଗାଡି ଛାଡି ଦେଲା । ଭି. ଆଇ.ପି. ଜଣକ ଗୋଟିଏ ବର୍ଥ ଦଖଲ କରି ସାରିଲା ପରେ ଯେଉଁ ଦୁଇ ଜଣ ସେତେବେଳେ ଟଏଲେଟ୍ ଯାଇଥିଲେ ସେମାନେ ଫେରିଆସି ଦେଖିଲେ ସେମାନଙ୍କ ବର୍ଥ ଦଖଲ ହୋଇ ସାରିଛି । ଏତିକି ବେଳେ ଜବର ଦଖଲ କାରୀଙ୍କ ଭିତରୁ ଜଣେ କହିଲେ, "ଆପକା ବର୍ଥ ହେ କ୍ୟା ? କୋଇ ବାତ୍ ନେହି । ହମ ଲୋଗ ଆଗେ ଉତର ଯାଏଙ୍ଗେ ।"

ଲୋକଟିର ଶୋଇବା ସମୟ ସେ ଏଯାଏ ସରି ନଥିଲା । ତଥାପି ଟିକିଏ ବସି ଯାଆନ୍ତୁ ବୋଲି ସ୍ନେହ ବୋଳା କଥା ତାଙ୍କ ପାଟିରୁ ବାହାରିଲା ନାହିଁ । ଗୋଟାଏ ବର୍ଥରେ ଚାରିଜଣ ବନ୍ଧୁକ ଧାରୀ ବସିଲେ ଆଉ ଜାଗା କାହିଁ ବସିବାକୁ ?

ସେମାନଙ୍କ ଭିତରୁ ଦି ଜଣ ଆସି ବସିଲେ ଶ୍ରାବଣୀ ପାଖରେ ପ୍ରାୟ ଦେହକୁ ଦେହ ଲଗେଇ । ମୁଁ ନମ୍ରତାର ସହିତ ମନା କଲି । କହିଲି ତାଙ୍କ ଦେହ ଖୁବ୍ ଅସୁସ୍ଥ । ଦୟାକରି ଏ ବର୍ଥଟିକୁ ଛାଡି ଦିଅନ୍ତୁ ।

ମୁଁ ଶ୍ରାବଣୀକୁ ଆଉ ଥରେ କମ୍ବଳ ଘୋଡେଇ ଦେଲି ଓ ତାଙ୍କ କାନ୍ଧ ଟାକୁ ଧରି ଟିକିଏ କଡେଇ ଦେଲି ଅତି ଯତ୍ନର ସହିତ ।

ସେମାନେ ଶ୍ରାବଣୀ ଆଡ଼କୁ ଦେଖିଲେ । ମୋ ମୁହଁକୁ ଚାହିଁଲେ । ତା ପରେ ଠିଆ ହୋଇ ପଡିଲେ । ମୋ ଭିତରଟା ଟିକିଏ ହାଲୁକା ହୋଇଗଲା ।

ଗାଡି ସେତେବେଳକୁ ଫୁଲ ପିକ୍ ଅପ୍ ନେବାକୁ ଆରମ୍ଭ କଲାଣି । ଅଗନ୍ତୁକ ମାନେ ପୋଲିସ ମାନଙ୍କ ସହ କଅଣ କଥାବାର୍ତ୍ତା ହେଲେ ଏବଂ କମ୍ପାର୍ଟ୍‌ମେଣ୍ଟର ଅନ୍ୟଆଡେ ଖେଳେଇ ହୋଇଗଲେ । ମୋର ମନେ ହେଲା ସେମାନେ ଭି. ଆଇ. ପି. ଙ୍କ ନିରାପତ୍ତା ଦୃଷ୍ଟିରୁ ବୋଧେ କାମ କରୁଥିଲେ ।

ସେତେବେଳକୁ ବୋଧେ ଘଣ୍ଟା ବାଜି ସରିଲାଣି । ଅଧାର ଡବାଟି ବାରମ୍ବାର ଦେଖିଚି ରହିଥାଏ । ନେତା ଜଣକ ବସି ଥାଆନ୍ତି ବଡ ଚିନ୍ତା ମଗ୍ନ ଅବସ୍ଥାରେ । ବେଶ୍ ଭାବ ଗମ୍ଭୀର ।

ଶ୍ରାବଣୀ ଉଠି ବସିଲେ ଏବଂ ମୋତେ ଚାହିଁ ସାମାନ୍ୟ ହସି କହିଲେ "ଥେଙ୍କସ୍ ଏ ଲଟ୍", ଏକଥା ବରାବର ମନେ ରହିବ ।

ମୁଁ କୃତ କୃତ୍ୟ ହୋଇ ପଡିଲି । ତାଙ୍କର ଚିରଦିନକୁ ମନେ ରଖିବାଭଳି କାମଟିଏ ମୁଁ କରି ପାରିଥିବାରୁ ନିଜକୁ ଧନ୍ୟ ମନେ କରୁଥିଲି । କହିଲି, ଶୋଉ ନାହାନ୍ତି ? ଉଠିଲେ କାହିଁକି ? ମୋର ଆଉ ଶୋଇବାର ନାହିଁ ।

ସେ ମୁଣ୍ଡବାଳ ସଜାଡିଲେଏବଂ ମୋ ଆଡକୁ ସାମାନ୍ୟ ହସଟିଏ ଫୋପାଡି ଦେଇ କହିଲେ ମୁଁ ଆସୁଚି । ସେ ଟୟଲେଟ ଆଡକୁ ଉଠିଗଲେ ।

ହଠାତ୍ ମୋ ପଛ ବର୍ଥ ଆଡୁ କେହି ଜଣେ ପାଟି କରି ଉଠିଲେ । ଗୋଟାଏ କରୁଣ ଚିତ୍କାର ।

ମୁଁ ଠିଆ ହୋଇ ପଡିଲି । କଅଣ ହେଲା ? ଆରେ କ୍ୟା ହୁଆ ?

ଚୋପ୍ । ଆଗନ୍ତୁକ ମାନଙ୍କ ଭିତରୁ ଜଣେ ମୋ ବେକ ପାଖରେ ପିସ୍ତଲ ଦେଖାଇ ଗର୍ଜନ କରି ଉଠିଲା 'ବୈଠୋ' ।

ବାସ୍, ମୋର ଆଉ ବୁଝିବାରେ ବାକି ନଥିଲା । ପିସ୍ତଲ ଦେଖାଇ ସେମାନେ ଆମ ସମସ୍ତଙ୍କୁ ଡବାର ଗୋଟିଏ ପାଖକୁ ନେଇ ଗଲେ । ତା ପରେ ମାତ୍ର କେଇଟା ମିନିଟ୍ ଭିତରେ ସେମାନେ ଆମ ସମସ୍ତଙ୍କର ସର୍ବସ୍ୱ ନେଇ ସାରିଲା ବେଳକୁ ଗାଡି ଗୋଟିଏ ପାହାଡ ଓ ଘଞ୍ଜଙ୍ଗଲ ପାଖରେ ଅଟକି ଗଲା । ସେମାନେ ସମସ୍ତେ ଖପା ଖପ୍ ତଳକୁ ଡେଇଁ ପଡିଲେ । ତା ପରେ କ୍ରମାଗତ ଗୁଳି ଫୁଟିବାର ଶବ୍ଦ ।

ଗାଡି ପୁଣି ଚାଲିବାକୁ ଆରମ୍ଭ କଲା । ମୁଁ ବ୍ୟସ୍ତ ହୋଇ ଦଉଡି ଆସିଲି ଟୟଲେଟ ପାଖକୁ । ଶ୍ରାବଣୀର କିଛି ହେଇ ନାହିଁ ତ ? କିନ୍ତୁ ଶ୍ରାବଣୀ କାହିଁ ?

ଟ୍ରେନ ସେତେବେଳକୁ ଧୀରେ ଧୀରେ ଗୋଟିଏ ନଈର ପୋଲ ଉପରେ ଚାଲିବାକୁ ଆରମ୍ଭ କଲାଣି । ମୁଁ ଦରଜା ଖୋଲି ଦେଖିଲି ବେଶ୍ କିଛି ଦୂରରେ ଶ୍ରାବଣୀ ଓ ସେ ଭି. ଆଇ. ପି. ଜଣକ ଆଗରେ ଏବଂ ଅନ୍ୟମାନେ ତାଙ୍କ ପଛରେ ନଈରେ ଥିବା ଗୋଟିଏ ମୋଟର ଲଞ୍ଚ ଆଡକୁ ଆଗେଇ ଯାଉଛନ୍ତି । ଗୁଳି ଫୁଟିବାର ଶବ୍ଦ ତଥାପି ବନ୍ଦହେଉ ନଥାଏ । ଆମ ଗାଡି ପୋଲ ପାର ହେଇ ଗୋଟାଏ ଟର୍ଣ୍ଣ ନେଲା ବୋଧେ ।

ସେମାନେ ଅଦୃଶ୍ୟ ହେବା ପୂର୍ବରୁ କେହି ଜଣେ ପାଟିକଲେ,

ଦରଜା ବନ୍ଦ କି ଜିଏ ।"

ମୁଁ ଫେରି ଆସିଲି ମୋ ବାର୍ଥ ପାଖକୁ । ସମସ୍ତେ ସେତେବେଳେ ନିଜ ନିଜ ସୁଟ୍‌କେଶ ଅଣ୍ଡାଳୁ ଥିଲେ । ମୁଁ ବି ଦେଖିଲି, କିନ୍ତୁ କି ଆଶ୍ଚର୍ଯ୍ୟ , ମୋର କିଛି ବି ଚୋରି ହେଇ ନଥିଲା । ମୋ ସ୍ତ୍ରୀ ପାଇଁ ଗୋଟିଏ ହାଇଦ୍ରାବାଦୀ ପାର୍ଲର ହାର ଏବଂ ପ୍ରାୟ ପାଞ୍ଚ ହଜାର ଟଙ୍କା । ସବୁ ଅକ୍ଷତ ଅବସ୍ଥାରେ ଥିଲା । ଯଦିଓ ସୁଟକେଶ୍ ଖୋଲା ଥିଲା ।

ମୁଁ କିନ୍ତୁ ଏ କଥା କାହାକୁ କହି ପାରିବି ? କାହାକୁ କହି ପାରିବି ଯେ ମୋର କିଛି ଚୋରି ହେଇ ନ ଥିଲେ ମଧ ସବୁ ଚୋରି ହେଇ ଯାଇଚି ? କେମିତି ଏ କଥା ମୁଁ କହି ପାରି ଥାଆନ୍ତି ?



ସୁଦେଷ୍ଣା- ୨୦୦୯

# ଗୋଟାଏ ଫୁଟି ଆସୁଥିବା ଫୁଲର ମୃତ୍ୟୁ

ସୁଲୋଚନା ସେ ଦିନ ସକାଳୁ ଉଠି ଯେତେବେଳେ ଦେଖିଲେ ତାଙ୍କ ବଗିଚାରେ ଥିବା ଫୁଲଗଛରେ ଗୋଟିଏ ବୋଲି ଫୁଲ ନାହିଁ; ସେ ବ୍ୟସ୍ତ ହୋଇ ପଡ଼ିଲେ । ଗଲା କାଲି ସନ୍ଧ୍ୟାରେ ସେ ବଗିଚାରେ ପ୍ରାୟ ଘଣ୍ଟାଏ କାଳ ବୁଲି ପ୍ରତ୍ୟେକ ଗଛ ମୂଳ ମହେଶ୍ୱରକୁ କହି ସଫା କରେଇ ଥିଲେ । ମହେଶ୍ୱର ତାଙ୍କର ମାଳି କାମ କରୁନଥିଲେ ମଧ ସେ ଅନେକ ସମୟରେ ଆସି ସୁଲୋଚନାଙ୍କ ପାଇଁ ଅନେକ କାମ କରିଦିଏ । ମହେଶ୍ୱର ଥାଏ ପାଖ ଓରାମ ପଡ଼ା ବସ୍ତିରେ । ତା ପୁଅ ସୁଲୋଚନାଙ୍କ ସ୍କୁଲରେ ପାଠ ପଢ଼େ । ବେଳେବେଳେ ସୁଲୋଚନା ମଧ ମହେଶ୍ୱରର ପୁଅ ଶ୍ରୀମନ୍ତର ପାଠପଢ଼ା କଥା ବୁଝି ଦିଅନ୍ତି ।

ସେଇ ମହେଶ୍ୱର ସେଦିନ ବଗିଚାରେ ଥିବା ସବୁ ଫୁଲ ଗଛ ମୂଳ ସଫା କରି, ସାର ଦେଇ, ମାଟଇ ଖୁସେଇ, ପାଣି ଦେଇ ଯାଇଥିଲା । ଛୋଟ ଛୋଟ ଲାଲ ଗେଣ୍ଡୁଫୁଲ ଥିବା କୁଣ୍ଡ ଗୁଡ଼ିକରେ ରଙ୍ଗ ଲଗେଇ ଗୋଟିଏ ଧାଡ଼ିରେ ସଜେଇ ରଖିଥିଲା । ଆଉ ଆଠ ଦଶ ଦିନ ଭିତରେ ଗେଣ୍ଡୁ ଛାଇ ହୋଇଯିବ । ବଗିଚାରେ ଆଉ ଫୁଲ ତ ଅଛି । କିନ୍ତୁ ପାଚେରୀ କଡ଼କୁ ଲାଗି ଯୋଉ ଦି'ଟା କନିଅର ଗଛ ଅଛି ସେଥିରେ ଫୁଲ ଛେଲି ହୋଇଯାଇଥିଲା । ପାଚେରୀ ସେ ପଟେ ରାସ୍ତାରୁ ଯେମିତି ଘର ଦେଖାଯାଏନି, ଭିତରପଟୁ ସେମିତି ବାଟରେ ଗାଡ଼ି ଘୋଡ଼ା ଗଲେ ଜମା ଦେଖା ଯାଏନି । ମଝିରେ ଗେଟ୍; ଗେଟ୍ ଦୁଇ ପାଖରେ ଫୁଲଭର୍ତ୍ତି କନିଅର ଗଛ । ବାଟରେ ଯାଉଥିବା ଲୋକ ଟିକେ ଆଖି ପକେଇ ଦେଖିବ ହିଁ ଦେଖିବ ।

ପଡୋଶୀମାନେ ମନେ ମନେ ଈର୍ଷା କରୁଥିବେ ଏଇଥିପାଇଁ ଯେ ଲୋକେ ସୁଲୋଚନାଙ୍କୁ ପ୍ରଶଂସା କରନ୍ତି ତାଙ୍କ ଫୁଲ ସଉକି ପାଇଁ । ନାରୀମାନେ ଏ ପ୍ରକାର ମନୋଭାବ ପୋଷଣ କରିବା ସ୍ୱାଭାବିକ । ସେମାନଙ୍କ ଈର୍ଷାର ଆଉ ଗୋଟେ କାରଣ ମଧ ଥିବ । ସେଇଟା ହେଲା ସୁଲୋଚନାଙ୍କ ସୁନ୍ଦରପଣ ସହିତ ତାଙ୍କ ଉଚ୍ଚତା । ଛଅଫୁଟ ହେବ ବୋଧେ । ଉତ୍ତମ ସ୍ୱାସ୍ଥ୍ୟ । ଗୋରା ତକ ତକ । ସରୁ ମୁହଁ ।

ପ୍ରକୃତ କଥା ହେଲା କୌଣସି କୌଣସି ଋତୁରେ ଯଦି ଗଛରେ ଫୁଲ କମ ଫୁଟେ ଏବଂ ତଳ ଡାଳରେ କମ ଥାଏ ପଡ଼ୋଶିନୀମାନେ ସୁଲୋଚନାଙ୍କ ସାହାଯ୍ୟ ବିନା ସାମାନ୍ୟ ଦୁଇଚାରିଟା ଫୁଲ ମଧ ପାଇ ପାରନ୍ତି ନାହିଁ । ଆଉ ଯୋଉମାନେ ଲମ୍ବା ବାଡି ନେଇ ଫୁଲ ତୋଳିବାକୁ ଆସନ୍ତି ସେମାନଙ୍କୁ ସୁଲୋଚନା କୁକୁର ଲଗେଇ ତଡ଼ି ଦିଅନ୍ତି ।

ତାଙ୍କ କୁକୁରବି କମ ନୁହେଁ । ଡେଙ୍ଗେରାତ ବାଘ ପରି । ଅଧିକନ୍ତୁ ମନେ ହେବ ଯେମିତି ଇଂଲଣ୍ଡ ଆମେରିକାରୁ ଟ୍ରେନିଂ ନେଇଆସିଚି । ଯେତିକି ଚତୁର ସେତିକି ହିଂସ୍ର । ବାଡ଼ି ଧରିଥିବା ଫୁଲ ତୋଳାଳୀ, ପୁରୁଷ ହେଉ ବା ସ୍ତ୍ରୀ ହେଉ, ଦେଖିଲା ମାତ୍ରେ ଗର୍ଜନଟିଏ କରେ, ଯେମିତି ଆକାଶ ଭାଙ୍ଗି ପଡ଼ିବ । କୁକୁରର ଯେ ବୁଝିବା ଶକ୍ତି ଥାଏ ଏ କଥା ସୁଲୋଚନାଙ୍କ 'ରାଜ୍'କୁ ଦେଖିଲେ ବୁଝି ହେଇଯାଏ । ମଣିଷକୁ ଦେଖିଲେ ସେ ବୁଝିଯାଏ ଏ ଲୋକର ଆସିବା ଉଦ୍ଦେଶ୍ୟ ।

ଏସବୁ ସତ୍ତ୍ୱେ ସୁଲୋଚନା ଦେଖିଲେ ତାଙ୍କ କନିଅର ଗଛରେ ମୋଟେ ଫୁଲ ନାହିଁ । କେଜାଣି ଖୋଜାଖୋଜି କଲେ ଚାରିଟା ମିଳିପାରେ । କିନ୍ତୁ ସେଥିରେତ କାମ ଚଳିବ ନାହିଁ । ସୁଲୋଚନାଙ୍କ ଠାକୁର ଘର ଗୋଟିଏ ଛୋଟ ମିଉଜିଅମ୍ । ସମସ୍ତଙ୍କୁ ଗୋଟିଏ ଗୋଟିଏ ଫୁଲ ଅତି କମ୍‌ରେ ଦେବାକୁ ହେଲେ ଗୋଟାଏ ଚାଙ୍ଗୁଡ଼ି ଭର୍ତ୍ତି ଫୁଲ ଦରକାର । ତେବେ ସେ ଭାବିଲେ ସେ କଥା ପରେ, ମହେଶ୍ୱରକୁ ପଠାଇ ବଜାରରୁ ଫୁଲ ମଗେଇ ହେବ । ସ୍କୁଲ ବେଳ ସାମାନ୍ୟ ଡେରି ହେଲେ ଚଳିବ । ସରକାରୀ ସ୍କୁଲ । ବସ୍ ଡେରି କଥା କହିହେବ ।

କିନ୍ତୁ ଅସଲ କଥା ହେଲା ଏ ପ୍ରକାର ନୃଶଂସ କାମ କିଏ କଲା ? ମାଗିଥିଲେ ମେଞ୍ଚେ ଦିଆଯାଇ ପାରିଥାଆନ୍ତା । ସେଥିପାଇଁ ସୁଲୋଚନା ମନା କରନ୍ତି ନାହିଁ । ଠାକୁର ସମସ୍ତଙ୍କ ଠାରୁ ପୂଜା ପାଆନ୍ତୁ । ପାଇବା ଉଚିତ ମଧ । କିନ୍ତୁ ତା ନକରି ଏ ଦୁଃସାହସ କାହାର ? ଏ ଅଞ୍ଚଳରେ ଏପରି ଅଧର୍ମୀ କିଏ ଅଛି ଯେ ମଣିଷ ସହିତ ଏତେ ବଡ଼ ଶିକ୍ଷିତ କୁକୁରକୁ ମଧ ବୁଦ୍ଧୁ ବନେଇ ପାରିଲା ? ବାଡ଼ିର ସାହାଯ୍ୟ ନନେଇ କିଏ ଏପରି କାମ କରିପାରିଲା ? କିଏ ସିଏ ? ଏ ଅଞ୍ଚଳରେ ଏ ଗଛରୁ ବିନା ବାଡ଼ିରେ ଫୁଲ ତୋଳି ପାରୁଥିବା ପୁରୁଷଟିଏ ମଧ ମିଳିବ ନାହିଁ । ନାରୀ କଥା ଛାଡ । ଆମର ଏ ୨୭ ନମ୍ବର ଓ୍ୱାର୍ଡ଼ରେ ପାଞ୍ଚଫୁଟ ତିନି ଇଞ୍ଚରୁ ବେଶୀ ଉଚ୍ଚତାର ନାରୀ କାହିଁ, କୋଉଠି ?

ସେ ମହେଶ୍ୱରକୁ ଡାକିଲେ । ପଚାରିଲେ ଆରେ ମହୀ, ଏତେ ସୁନ୍ଦର ଫୁଲ ଗଛଟିକୁ କିଏ ଲଣ୍ଡା କଲା କହିବୁ ? ଏମିତି ତ କେବେ ହେଇ ନଥିଲା । ମୁଁ ସିନା ଜାଣିପାରିଲି ନାହିଁ, ଆମ ରାଜ୍ ମଧ ଜାଣିପାରିଲା ନାହିଁ ।

ମହୀ ସୁଲୋଚନାଙ୍କ ପାଖକୁ ଆସି କହିଲା ଏମିତି ଥରେ ଥରେ ହୁଏ ମାଆ । ଆପଣ ନଥିଲା ବେଳେ ମୁଁ ବି ଦେଖିଚି ବଡ଼ିଭୋରରୁ କେମିତି କେଜାଣି ସବୁ ସାଫ୍ ହେଇଯାଇଥାଏ । ସେତେବେଳେ ଆପଣଙ୍କ କୁକୁର ତ ରାତିଯାକ ବୁଲୁଥାଏ ।

ସୁଲୋଚନାଙ୍କୁ ବଡ ଆଶ୍ଚର୍ଯ୍ୟ ଲାଗିଲା । ତେବେ କଅଣ କେହି କୁକୁରକୁ ମେସ୍‌ମେରିଜମ ବଳରେ ବଶ କରିଦେଉଚି ?

ରାଜ୍ ! ସେ ଡାକିଲେ ।

ଅତ୍ୟନ୍ତ ବିଶ୍ୱସ୍ତ ଭୃତ୍ୟ ପରି ରାଜ ଆସି ପାଖରେ ଠିଆ ହେଲା ଏବଂ ପରମ ଆନୁଗତ୍ୟର ଇସାରା ଦେଇ ବିଶାଳ ଲାଙ୍ଗୁଡ଼ ପିଟି ହଲେଇବାକୁ ଲାଗିଲା । ଆଖିରେ ତାର ଭୃତ୍ୟ ଭାବ । 'ଏକାନ୍ତ ତୁମର । ଆଉ କାହାରି ନୁହେଁ ।'

ଏ ଗଛରୁ ଫୁଲ ସବୁ କିଏ ନେଲା କିରେ ? ତୁ ଜାଣିନୁ ? କାହିଁକି ?

ରାଜ ଥରେ ଗଛକୁ ଅନେଇଲା ଓ ତା'ପରେ ଅବୁଝା ଭାଷାରେ କୁଁ କୁଁ ହେଇ ସୁଲୋଚନାଙ୍କ ଆଗରେ ଠିଆ ହେଇ ରହିଲା ।

ସୁଲୋଚନା ତାକୁ ହାତ ଠାରି ଉପରକୁ ଉଠିବାକୁ ନିର୍ଦ୍ଦେଶ ଦେଲେ ।

ରାଜ ଦୁଇ ଗୋଡ଼ ଟେକି ଉଠି ପଡ଼ିଲା । ସୁଲୋଚନା ତାକୁ କୋଳେଇ ନେଲେ ଏବଂ ତା ବେକ, ପିଠି, କାନମୂଳ, ମଥା ଆଉଁସି ଦେଲେ । ନିଜ ପେଟ ଉପରେ ତା ମୁଣ୍ଡକୁ ରଖି ଗେଲ କରିବାକୁ ଲାଗିଲେ ।

ନା, ତାଙ୍କ ରାଜ ନିର୍ଦ୍ଦୋଷ । ସେ କିଛି ଜାଣି ନାହିଁ । ସେ ସବୁ କରିପାରେ କିନ୍ତୁ ବିଶ୍ୱାସଘାତକତା ନୁହେଁ । ବିଶ୍ୱାସଘାତକତା ମଣିଷ କରିପାରେ, ପଶୁ ନୁହେଁ । ସେ ଆହୁରି ସ୍ନେହ ଆଦରରେ ତାକୁ ଆଉଁସିବାକୁ ଲାଗିଲେ । କେତେ ଆପଣାର ଏ ପଶୁଗୁଡ଼ାକ ସତେ ।

ଯେଉଁମାନେ ବିନା ଅନୁମତିରେ ତାଙ୍କ ବାଡ଼ିରୁ ଫୁଲ ନେଇଛନ୍ତି ସେମାନଙ୍କୁ ସେ ଅଭିଶାପ ଦେବାକୁ ଲାଗିଲେ । ତୁମ କଥା ମା ଭଗବତୀ ବୁଝିବେ । ଈଶ୍ୱରହିଁ ତୁମକୁ ଦଣ୍ଡ ଦେବେ । ଏ ଯେଉଁ ଅପକର୍ମ କଲ ସେଥିପାଇଁ ତୁମେ ଅବଶ୍ୟ ଦଣ୍ଡ ପାଇବ ।''

ସେ ସେଦିନ ଅନେକ ସମୟ ପର୍ଯ୍ୟନ୍ତ ବାରଣ୍ଡାରେ ଚେଆରଟିଏ ପକେଇ ବସି ରହିଲେ । ନା, ଆଜି ସେ ସ୍କୁଲ ଯିବେ ନାହିଁ । ଗୋଟାଏ ଦିନ ଛୁଟି ନେଇଯିବେ ।

କିନ୍ତୁ ସେଇଟା ତ ସମାଧାନର ରାସ୍ତା ନୁହେଁ । ଆଗକୁ ଅଛି ଅନେକ ବାର ବ୍ରତ । ବହୁ ପୂଜେଇ ପର୍ବ । ସେ ମନେ ପକେଇଲେ, ଏବେ ଏବେ ପଡ଼ିବ ମାଘ ସପ୍ତମୀ (ଚନ୍ଦ୍ରଭାଗା ସ୍ନାନ), ତାପରେ ସୁଦଶାବ୍ରତ, ପରେ ପରେ ଆସିବ ମାଘ ପୂର୍ଣ୍ଣିମା, ତାପରେ ଶିବରାତ୍ରି, ତାପରେ ଆସିବ ଦୋଳ, ଜଗନ୍ନାଥଙ୍କ ସୁନାବେଶ । ପରେ ଆହୁରି ଲମ୍ବିଚି ସେ ତାଲିକା । ଠାକୁରଙ୍କୁ ବିରାମ ନାହିଁ ରାମ ନବମୀ ଯାଏ । ଏ ପ୍ରତ୍ୟେକଟି ବାର ବ୍ରତ ସୁଲୋଚନା ଅତି ନିୟମ ନିଷ୍ଠାର ସହ ପାଳନ କରନ୍ତି । କେତେକ ବ୍ରତ ଓଷାରେ ବହୁତ ଲୋକ ଘରକୁ ଆସନ୍ତି । ସେ ଦିନ ଦିନ ଯାକ ତାଙ୍କ ଘରେ ମେଳା ବସେ । ପଡ଼ିଶା ଘରୁ ଆସି ଯାଆନ୍ତି ଅଫିସର ଓ ଅଣଅଫିସରଙ୍କ ସ୍ତ୍ରୀମାନେ । କିଛି ସେମାନଙ୍କ ଭିତରୁ ସୁଲୋଚନାଙ୍କ ସହକର୍ମୀ, ଅଧାପିକା, ଡାକ୍ତର ଏବଂ ଆଉ ଜଣେ ଦି'ଜଣ ହାଉସ ୱାଇଫ୍ । କେବଳ ମିସେସ୍ ପଟ୍ଟନାୟକ ଯେ କି ଆଗ ଲାଇନ ଶେଷରେ ଥିବା ବଂଗଳାରେ ଥାଆନ୍ତି ଏବଂ ସେକ୍ରେଟେରିଏଟରେ ଜଏଣ୍ଟ ସେକ୍ରେଟେରୀ ଅଛନ୍ତି, ଏଇ ଛଅମାସ ହେଲା ସମ୍ବଲପୁରରୁ ବଦଳି ହେଇ ଆସିଚନ୍ତି, ସେ ତାଙ୍କ ପିଅନ ହାତରେ ପୂଜା ସାମଗ୍ରୀ ପଠେଇ ଦିଅନ୍ତି । ଫୁଲର ଦାୟିତ୍ୱ ସୁଲୋଚନାଙ୍କର । କାରଣ ତାଙ୍କ ବଗିଚାରେ ଖାଲି ଗୋଲାପ କିମ୍ବା ସିଜିନ ଫୁଲ । କନିଅର ଅଫିସରଙ୍କ ବଂଗଳାରେ ହୁଏନା ।

ଅନ୍ୟ ଯୋଉମାନେ ଆସନ୍ତି ସେମାନେ ମଧ ଫୁଲ ଆଣନ୍ତି ନାହିଁ । ନିର୍ଭର କରନ୍ତି ସୁଲୋଚନାଙ୍କ ଉପରେ ।

ମିସେସ୍ ପଟ୍ଟନାୟକ କେତେ ଥର ସେଦିନ ଫୋନ କରନ୍ତି । ଆପଣତ ଜାଣନ୍ତି ଚିଫ୍ ସେକ୍ରେଟେରୀଙ୍କ ଅଫିସରେ କେତେ କାମ । ଆପଣ ଟିକେ ଚଳେଇ ନେବେ । ମୁଁ ଫେରିଲେ, ଯେତେବେଳେ ଯାଇ ପହଞ୍ଚିଲେ ମଧ ଆଗେ ଯିବି ଆପଣଙ୍କ ଘରକୁ । ସେଠି ମୁଣ୍ଡିଆ ମାରି ଫୁଲଟିଏ ନେବି, ତାପରେ ଘରକୁ ଫେରିବି ।

ମିସେସ ପଟ୍ଟନାୟକ ସୁଲୋଚନାଙ୍କ ଠାରୁ ବୟସରେ ପାଞ୍ଚ ଛଅବର୍ଷ ସାନ ହେବେ । ବଡ଼ ଭଉଣୀ ପରି ସୁଲୋଚନାଙ୍କୁ ଭକ୍ତି କରନ୍ତି । ଅନ୍ୟମାନେ ମଧ । ସୁଲୋଚନା ମିସେସ୍ ପଟ୍ଟନାୟକଙ୍କୁ ଶ୍ରଦ୍ଧା କରନ୍ତି । ଏତେ ବଡ଼ ଅଫିସର । ଟିକିଏ ବୋଲି ଗର୍ବ ନାହିଁ । ସାବିତ୍ରୀ ବ୍ରତ ନିଜେ ସୁଲୋଚନା ଠାକୁର ଠାକୁରାଣୀଙ୍କ ସିଂହାସନରୁ ଆଣି ମିସେସ୍ ପଟ୍ଟନାୟକଙ୍କ ହାତରେ ବାନ୍ଧି ଦିଅନ୍ତି । ଗୋଟାଏ ମୁରବି ପଣିଆ । ବଡ଼ ପଣିଆ ମଧ । ସେହି ଆଦରରେ ସଭିଏଁ ବଂଧା ହେଇ ଥାଆନ୍ତି । କିନ୍ତୁ ଫୁଲ ଚୋରି ଯେମିତି ରାତି ଅଧିଆ ଇନ୍ଦ୍ରଜାଲ ରୀତିରେ ସମସ୍ତଙ୍କ ଆଖିରେ ଅଧ ପୁଟୁଳି ବାନ୍ଧି ଦେଇ ଯାଉଚି ସେଥିରେ ତାଙ୍କ ବ୍ରତ ଓଷାର ଭବିଷ୍ୟତ କଅଣ ହେବ ? କଅଣ ହେବ ତାଙ୍କ ଦେବ ଦେବୀଙ୍କ ଭବିଷ୍ୟତ ? ଏବଂ ସର୍ବୋପରି କଅଣ ହେବ ତାଙ୍କ ବଡ଼ ପଣିଆର ଭବିଷ୍ୟତ ?

ସୁବ୍ରତ ବାବୁ ଗେଟ ଖୋଲି ଭିତରକୁ ପଶି ଆସିଲେ । ସେ ମର୍ଣ୍ଣିଂୱାକ୍‌ରେ ଯାଇଥିଲେ । ହାଫ୍ ପେଣ୍ଟ, ସ୍ପୋର୍ଟ ଗେଞ୍ଜି, ୱାକିଂ ସୁ । ଝାଳ ସର ସର ।

ଆରେ ତୁମେ ଏତେ ବେଳ ଯାଏ କୁଆଡ଼େ ଯାଇଥିଲ ? ମୋର ତ ଧାରଣା ଥିଲା ତମେ ଉପର ଘରେ ନିତ୍ୟକର୍ମରେ ବ୍ୟସ୍ତ ଅଛ । କହିଲେ ସୁଲୋଚନା ।

ସୁବୋଧ ସହିତ ଦେଖା ହେଇଗଲା ଅଚାନକ । ସେତ କେବେ ପାର୍କ ଭିତରକୁ ଆସେନି । ଆଜି ବୁଲୁବୁଲୁ ଚାଲି ଆସିଚି । ଅନେକ ଦିନ ପରେ ଦେଖା । ବସିଗଲୁଁ ଗପିବାକୁ । ରାଜନୀତି, ଅର୍ଥନୀତି ଓ ସମାଜନୀତି ସବୁ । କିନ୍ତୁ ତମେ ଏଯାଏ ବସିଚ ଯେ ? ଆଜି ଯିବନି ସ୍କୁଲକୁ ? ଆଉ କେତେବେଳେ ? ଗୋଡ଼ରୁ ଜୋତା ଖୋଲୁ ଖୋଲୁ ପଚାରିଲେ ସୁବ୍ରତ ।

ସୁଲୋଚନା ଗମ୍ଭୀର ହେଇ ଉଠିଲେ । ଦେଖୁଚ ଏ ଫୁଲ ଗଛଗୁଡ଼ାକୁ ।

ଫୁଲଗଛ ? କଅଣ ହେଇଚି କହିଲ ?

ଗୋଟିଏ ବୋଲି ଫୁଲ ନାହିଁ । ରାତିରୁ ସବୁ ଚୋରି ହେଇଯାଇଚି । ଏବେ ପୂଜା ହେବ କେମିତି ?

ଧେତ୍, ଏଇଟା ଗୋଟାଏ କଥା । ତା ପାଇଁ ଗୁମ ମାରି ବସିଚ ? ଯାଅ, ମହୀକୁ ପଠେଇ ଦିଅ ବଜାରକୁ । ଏବେ ନିର୍ବାଚନ ବଜାର । ଫୁଲର ଦାମ ଟିକେ ବଢ଼ିଚି । ଯାହା ବି ପଡୁ । ପୂଜାତ ହେବ । ତା ପାଇଁ ଏତେ ଚିନ୍ତା କାହିଁକି ?

ମୁଁ କିନ୍ତୁ ସେ କଥା ଭାବୁ ନାହିଁ । ମୁଁ ଭାବୁଚି ଫୁଲ ଚୋରି ହେଲା କେମିତି ? ରାଜତ ଖୋଲା ଥିଲା ରାତିଯାକ । ସେତ ଆମ ପାଚେରୀ ପାଖକୁ ମଧ କାହାକୁ ଆସିବାକୁ ଦିଏ ନାହିଁ ।

ଆଃ, ତୁମେ ସେ ସବୁ ବାଜେ କଥାରେ ମୁଣ୍ଡ ଖେଳାଅ ନାହିଁ । କୁକୁର ଯେ ତା କାମରେ ହେଳା କରେ ନାହିଁ ଏକଥା କେମିତି ଜାଣିଲ ? ତା ବ୍ରେନ କଅଣ ମଣିଷ ପରି ? ତାର କିଛି ଅସୁସ୍ଥତା ଥିବ । ବରଂ ତୁମେ ଯଦି ସିରିଅସଲି କଥାଟାକୁ ଭାବୁଚ ତେବେ ତାର ଟ୍ରେନରକୁ ଡକାଅ ଏବଂ ଭେଟ୍ ଡାକ୍ତର ନାୟକଙ୍କୁ ଡକାଅ । ସେମାନେ ତାର ପ୍ରତିକାର ବ୍ୟବସ୍ଥା କରିବେ । ସୁବ୍ରତ ଭିତରକୁ ଚାଲିଗଲେ ।

ସେ ପୁଣି ଭିତରୁ ଫେରିଆସିଲେ ଏବଂ କହିଲେ ଶୁଣ, ଫୁଲ ଏ ପୃଥିବୀରେ ଦୁଇ ଜଣଙ୍କ ପାଇଁ ଭଗବାନ ସୃଷ୍ଟି କରିଚନ୍ତି । ପ୍ରଥମରେ ନାରୀମାନଙ୍କ ପାଇଁ ଓ ଦ୍ୱିତୀୟରେ ନେତାମାନଙ୍କ ପାଇଁ । ଆମର ଏ ଫୁଲଗଛ ପାଖରେ ନାରୀମାନେ ହିଁ ନୁଙ୍ଗୁରୁ ପୁଙ୍ଗୁରୁ ହୁଅନ୍ତି । ମୋ ମତରେ ପୃଥିବୀରେ ଈଶ୍ୱର ପ୍ରଥମେ ନାରୀମାନଙ୍କୁ ସୃଷ୍ଟି କରି ପରେ ଫୁଲକୁ ସୃଷ୍ଟି କରିଥିବେ । ତେଣୁ ତାଙ୍କ ଫୁଲ ସେମାନେ ନିଅନ୍ତୁ ।

ତୁମେତ ସେ କଥା କହିବ । ମୁଁ ଦେଖି ନାହିଁ କି ନାରୀମାନେ ଭୋରରୁ ଫୁଲ ପାଇଁ ଆସିଲେ ତମେ କଅଣ ସେମାନଙ୍କୁ ମନା କରକି ? ବରଂ ସେମାନଙ୍କ ସାଥିରେ ହସ ଖୁସି ହୁଅ ।

ସୁଲୋଚନା ଚେଆରରୁ ଉଠି ପଡ଼ିଲେ ଏବଂ କହିଲେ ତମେ କେମିତି କହିପାରୁଚ ଫୁଲ ନାରୀମାନଙ୍କ ପାଇଁ ହେଇଚି ?

ହଉ ବାବା ହେଲା ସେଇଟା ମୋର୍ ଅପରାଧ । ଫୁଲ ଈଶ୍ୱରମାନଙ୍କ ପାଇଁ ତିଆରି ହେଇଚି । ଏଥର ଆସି ଚା କପେ ଦିଅ ।

ସୁଲୋଚନା ଭିତରକୁ ଆସିଲେ । ଚା' କପଟି ତାଙ୍କ ହାତକୁ ବଢ଼ାଇ ଦେଇ କହିଲେ ତୁମେ ଟିକିଏ ଯାକୁ ନଜରରେ ରଖିଲେ ହୁଅନ୍ତା ନାହିଁ । ଅନ୍ଧାରରୁ ତ ଉଠୁଚ । ଟିକିଏ ଦେଖନା । ମୁଁ ଆଉ କେତେ ଜଗିବି କହିଲ ?

ମୁଁ ତ ଦେଖୁଚି । କିନ୍ତୁ ମୁଁ ତ ଆଉ ଠିଆ ହେଇ ରହିପାରିବି ନାହିଁ । ସେମିତି ହେଲେ ବି ତୁମେ ମୋତେ ଦୋଷ ଦେବ । ମୋର କଅଣ ଦରକାର ? ହଉ, କହୁଚ ଯଦି ଏଥର ଦେଖିବା । ଗଲାବେଳେ ରାଜକୁ ଆଣି ଗେଟ ପାଖରେ ବାନ୍ଧି ଦେଇଯିବି । ମୋର କଅଣ ମନେ ହେଉଚି ଜାଣ ? ରାଜ ରାତିରେ ମୂଷା ପଛରେ ଗୋଡ଼ାଉ ଥିବ । ମୁଁ ଏମିତି ଥରେ ଦି'ଥର ତାକୁ ଦେଖିଚି । ଏଇଟା ଏବେ ବଡ ବଦମାସ ହେଇ ଗଲାଣି ।

ରାଜ ଆସି ପାଖରେ ଠିଆ ହେଲା । ସେ ସୁବ୍ରତଙ୍କୁ ଦେଖିଲା, ତାପରେ ଘୁର୍ ଘୁର୍ କଲା । ପ୍ରତିବାଦ କଲା ବୋଧେ । ସୁବ୍ରତ ତା ବେକରେ ହାତ ମାରିଲେ । ତାପରେ ତା ମୁହଁକୁ

ଟେକି ଧରି କହିଲେ କଅଣ ମୁଁ ମିଛ କହିଲି ? ତୁ ସେ ଦିନ ବାଡ଼ କଡ଼େ କଡ଼େ ମୂଷା ପଛରେ ଦଉଡୁ ନଥିଲୁ ? ଗୋଟାକୁ ପିଟି ପିଟି ମାରି ଦେଇ ନଥିଲୁ ?

ରାଜ ପୁଣି ଥରେ କହିଲା ଘୁର୍‌ର୍ ।

ତାର କିଛି ଦିନ ପରେ । କେମିତି କେଜାଣି ସୁଲୋଚନାଙ୍କ ନିଦ ଭାଙ୍ଗିଯାଇଛି । ହୁଏତ ଏ.ସି.ବନ୍ଦ ହୋଇ ଯାଇଥିବା ଯୋଗୁଁ କି ଆଉ କିଛି କାରଣ ଥାଇପାରେ । ସୁଲୋଚନା ଏ.ସି. ବନ୍ଦର କାରଣ ଖୋଜିବାକୁ ଲାଗିଲେ । ପରେ ଜାଣିଲେ ତାହା ପାଓ୍ୱାର ଫେଲ୍ୟୋର । ସେ ଉଠିଲେ ।

ସୁବ୍ରତ ବିଛଣାରେ ନାହାନ୍ତି । ସେ ମର୍ଣ୍ଣିଂଓ୍ୱାକରେ ଚାଲିଗଲେଣି । ସମୟ ତେବେ ଚାରିଟା । ସୁବ୍ରତ ମର୍ଣ୍ଣିଂଓ୍ୱାକରେ ଗଲାବେଳେ ସୁଲୋଚନାଙ୍କୁ ନ ଉଠାଇ ବାହାରୁ ତାଲା ଦେଇ ଚାଲିଯାଆନ୍ତି । ଦରକାର ହେଲେ ସୁଲୋଚନା ଅନ୍ୟ ବାଟରେ ବାହାରକୁ ଆସନ୍ତି କିମ୍ବା ବେଳେବେଳେ ମହୀ ଆସି ବାହାରୁ କବାଟ ଫିଟେଇ ଦିଏ ।

ସୁଲୋଚନା ସେଦିନ ନିଦ ବାଉଳାରେ ଭିତର ମେଜା ପାର ହୋଇ ଡ୍ରଇଂ ରୁମରେ ପହଞ୍ଚିଲେ । ହଠାତ ତାଙ୍କର ଫୁଲ ଚୋରି କଥା ମନେପଡ଼ିଲା । ସେ ଗୋଟିଏ କୋଣ ଝରକା ଦେଇ ଗେଟ୍ ଓ ଫୁଲଗଛ ଆଡ଼କୁ ଆଖି ପକେଇଲେ । ପାଓ୍ୱାର ଫେଲ୍ୟୋର ଯୋଗୁଁ ଷ୍ଟ୍ରିଟ ଲାଇଟଗୁଡ଼ାକ ମଧ ଜଳୁ ନଥିଲା । ସୁଲୋଚନା ଦେଖିଲେ ବାହାର ପଟେ ପାଚେରୀ ପାଖରେ କେହି ଜଣେ ଠିଆ ହୋଇଛି । ଆଜିକାଲି ଏମିତି ହେଇଛି, ପୋଷାକ ପରିଚ୍ଛଦରୁ ଦୂରରୁ ଜଣେ ପୁରୁଷ କି ସ୍ତ୍ରୀ ଜାଣି ହେବନାହିଁ । କିରଣ ବେଦୀଙ୍କୁ ଆଗରୁ କି ପଛରୁ ଦେଖିଲେ ହଠାତ ବାରି ହୁଏ ନାହିଁ ସେ ସ୍ତ୍ରୀ କି ପୁରୁଷ । କିନ୍ତୁ ଆଜିକାଲି ସବୁ ନାରୀ ପ୍ରାୟ ଏଇ ପୋଷାକ ପସନ୍ଦ କରନ୍ତି । କିନ୍ତୁ ରାତି ପାହି ନଥିବା ବେଳେ ଏବଂ ପାଓ୍ୱାର ନଥିବାବେଳେ ସମସ୍ୟା ଆହୁରି ଜଟିଳ ହୁଏ । ରାସ୍ତା ଝୁଣ୍ଟିବା ସ୍ୱାଭାବିକ ।

ଖୁବ ନିରୀକ୍ଷଣ କଲା ପରେ ସେ ଜାଣିଲେ ଇଏ ନାରୀ । ଓଢ଼ଣୀ ବାରମ୍ବାର ସଜାଡୁଛି । ସେଲଓ୍ୱାର କମିଜ ପିନ୍ଧିଛି । ତେବେ ଝିଅ ନା ବୋହୂ ? କିନ୍ତୁ ଫୁଲ ତଳୁ ଗୋଟାଉଛି । ବାସି ଫୁଲ ନଉଛି ? ନା ତା' ବି ନୁହେଁ ହାତ ବଢ଼ାଇ ଫୁଲ ତୋଳୁଛି । ବାରମ୍ବାର ଉପରକୁ ଦେଖୁଛି, କିଛି କଥା ହେଉଛି ବୋଧେ ।

ସୁଲୋଚନା ଦେଖିଲେ ବେଳବେଳେ ଡାଳ ତଳକୁ ନଇଁ ଆସୁଛି । ଆଉ କେହି ଡାଳକୁ ବାଡ଼ିରେ ଟାଣୁଛି ? କେହି ଗଛରେ ଚଢ଼ିଛି କି ଆଉ ? ଅନ୍ଧାର ତଥାପି ଗାଢ଼ ଥିଲା ।

ସେ ଖୋଜିଲେ ରାଜକୁ । ଏଇ ସମୟରେ ରାଜ କୁଆଡ଼େ ଗଲା ? ସେ ଚାରିଆଡ଼କୁ ନଜର ପକାଇଲେ । ହଠାତ ତାଙ୍କର ନଜର ପଡ଼ିଲା- ଗେଟ ପାଖରେ ରାଜ ସିମେଣ୍ଟ ଚଟାଣ

ଉପରେ ପେଟେଇ ପଡ଼ୁଚି । ବେକଟାକୁ ସିଧା ଆଗକୁ ଲମ୍ବେଇଚି । ବେଳେବେଳେ ସତର୍କତାର ସହିତ ବେକ ଉଠେଇ ଚାରି ଆଡ଼କୁ ଦେଖୁଚି ଏବଂ ପୁଣି ବେକ ତଳକୁ କରୁଚି । ଆଶ୍ଚର୍ଯ୍ୟ । ସେ ପଛ ପଟକୁ ଦୌଡ଼ିଗଲେ ଏବଂ କବାଟ ଖୋଲି ବାଡ଼ି ପଟ ଦେଇ ସାମନା ପଟକୁ ଆସିଲେ ସେଥିରେ କିଛି ସମୟ ଲାଗିଲା ।

କିନ୍ତୁ ସେତେବେଳକୁ ଆଉ ସେଠି କେହି ନଥିଲେ ।

ରାଜ ଦୌଡ଼ିଆସିଲା ସୁଲୋଚନାଙ୍କ ପାଖକୁ । ପୁଣି ଏକାନ୍ତ ବଶମ୍ବଦ ଭୃତ୍ୟ ପରି ସେ ଲାଙ୍ଗୁଡ଼ ଖୁବ ଜୋରରେ ହଲେଇବାକୁ ଲାଗିଲା ।

ସୁଲୋଚନା ଥମ୍ ହୋଇ ଛିଡ଼ା ହୋଇଗଲେ । କ୍ରୋଧ ଓ ଘୃଣାରେ ତାଙ୍କ ସର୍ବାଙ୍ଗ ଥରି ଉଠୁଥିଲା । ଗୋଟାଏ ଅବ୍ୟକ୍ତ ବେଦନାରେ ସେ ଯେମିତି ଫାଟି ପଡୁଥିଲେ ।

ରାଜ ସେମିତି ଛିଡ଼ା ହୋଇଥିଲା ସୁଲୋଚନାଙ୍କୁ ଚାହିଁ ।

ସେ ଯେମିତି ନିଜ ପକ୍ଷ ସମର୍ଥନ କରି କହୁଥିଲା ମୁଁ ନିର୍ଦ୍ଦୋଷ ।

ସୁଲୋଚନା ଆଉ ସମ୍ଭାଳି ପାରିଲେ ନାହିଁ ।

ସେ ଚିତ୍କାର କରି ଡାକିଲେ ମହୀ ! ଆସିଲୁ ଇଆଡ଼େ ।

ସେ ଦିନ ମର୍ଣ୍ଣିଂୱାକରୁ ଫେରି ସୁବ୍ରତ ଦେଖିଲେ ମହୀ ଫୁଲଗଛ ଦୁଇଟିକୁ କାଟି ତଳେ ପକାଇ ଦେଇଚି ।



ବିଜୟା- ୨୦୦୯



ଭୂପେନ୍ ମହାପାତ୍ର, ଓଡ଼ିଆ ସାହିତ୍ୟରେ ଖୁବ୍ ଜଣାଶୁଣା ବ୍ୟକ୍ତିତ୍ୱ । ସାହିତ୍ୟର ସବୁ ଦିଗରେ ସେ ପାରଙ୍ଗମ । ତାଙ୍କ ରଚିତ ଗଳ୍ପ, ଉପନ୍ୟାସ, କବିତା, ଆଲୋଚନା, ସମାଲୋଚନା ବିଗତ ଚାରି ଦଶନ୍ଧିରୁ ଉର୍ଦ୍ଧ୍ୱ କାଳ ଧରି ପାଠକଙ୍କୁ ଉଦ୍‌ବୁଦ୍ଧ କରି ଆସିଅଛି । **'ମନର ମାନଚିତ୍ର'** ତାଙ୍କ ଲିଖିତ ପ୍ରେମ ଗଳ୍ପ ଗୁଡିକର ଏକ ସମାହାର । ଅବଶ୍ୟ ପାଠକୀୟ ସ୍ୱୀକୃତି ପାଇବାର ଆଶା ନିଏ ।



